ଈଶ୍ୱରଙ୍କ ନିକଟବର୍ତ୍ତୀ
ହେବା ପାଇଁ ପାର୍ଥିବ ବସ୍ତୁ
ଭିକ୍ଷାସୀ ଭାବେ ନମାଗି
ସ୍ନେହାସ୍ପଦ ଦିବ୍ୟ ପୁତ୍ର
ତୁଲ୍ୟ ମାଗ । ଭକ୍ତ ଜାଣେ
ଯେ, ଯାହା ତାଙ୍କ
ପିତାଙ୍କର ରହିଛି, ପୁତ୍ରର
ତହିଁରେ ଅଧିକାର ।

# ଅମୃତବିନ୍ଦୁ



ଲେଖକ

ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା

# ଅମୃତ ବିନ୍ଦୁ

ଲେଖକ- ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା
ବାରବାଟୀ, ଧର୍ମଶାଳା, ଯାଜପୁର, ଫୋନ୍: ୯୮୬୧୭୨୨୨୫୮
ପ୍ରକାଶକ : କୃଷ୍ଣା, ଜାରକା, ଧର୍ମଶାଳା, ଯାଜପୁର, ଫୋନ୍: ୯୨୩୮୫୧୯୮୧୫
ପ୍ରଥମ ସଂସ୍କରଣ : ୨୦୨୧- ରାକ୍ଷୀପୂର୍ଣ୍ଣିମା
ମୂଲ୍ୟ : ୮୦/

# AMRUTA BINDU

BY

Sushanta Kumar Panda ,Reader
Barabati, Dharmasala, Jajpur, Ph: 9861722258
**Published by: KRUSNA**
Jaraka, Dharamasala, Jajpur, Ph: 9238519815
**First Edition : 2021- RAKHI PURNIMA**
Price **Rs. 80/**

ଉତ୍ସର୍ଗ.....

ମୋର ବଡ଼ବାପା, ବଡ଼ମା'

୰ଗୋବିନ୍ଦ ଚନ୍ଦ୍ର ପଣ୍ଡା

୰ହେମନ୍ତ କୁମାରୀ ଦେବୀଙ୍କ

କରକମଳରେ

ସୁଶାନ୍ତ କୁମାର ପଣ୍ଡା

# ଅଭିମତ

## ଓଁ ଶ୍ରୀ ସଦ୍‌ଗୁରୁ ପରମାତ୍ମନେ ନମଃ

ଖାଦ୍ୟ ଖାଇଲେ ଶରୀର ପୁଷ୍ଟ ହୁଏ । ସ୍ୱାଧ୍ୟାୟ ଦ୍ୱାରା ମନ ତୁଷ୍ଟି ହୁଏ । ବିନା ତୁଷ୍ଟିରେ ପୁଷ୍ଟତା ବ୍ୟର୍ଥ । ଯିଏ ସ୍ୱାଧ୍ୟାୟୀ ସେ କୁଶଳି ହେବା ଆବଶ୍ୟକ । ଭ୍ରମର ଯେପରି ଚତୁରତାର ସହିତ ପୁଷ୍ପରୁ ମଧୁ ସଂଗ୍ରହ କରିଥାଏ ସେହିପରି ଜଣେ ପ୍ରକୃତ ସ୍ୱାଧ୍ୟାୟୀ ଆପଣା ବିବେକ ବିଚାରକୁ ମହତ୍ୱ ଦେଇ ଶାସ୍ତ୍ରର ସାରାଂଶକୁ ଗ୍ରହଣ କରିଥାଏ । ଅନୁଭବକୁ ଭିତ୍ତିକରି ଆପଣାର ଉଚ୍ଚାରଣ ଓ ଆଚରଣରେ ସେ ଜଣେ ସମାଜର ଆଦର୍ଶ ପୁରୁଷ ହୋଇଯାଆନ୍ତି । ଅତଏବ ସ୍ୱାଧ୍ୟାୟ ହିଁ ତପସ୍ୟା ।

ଶୋଇପଡ଼ିଲେ ଶରୀରକୁ ସଂପୂର୍ଣ୍ଣ ବିଶ୍ରାମ ମିଳିଥାଏ କି ନାହିଁ କିନ୍ତୁ ପରମାର୍ଥ ଚିନ୍ତନ ଦ୍ୱାରା ମନକୁ ପୂର୍ଣ୍ଣ ବିଶ୍ରାମ ମିଳିଥାଏ । ଆତ୍ମସ୍ଥିତି ହିଁ ପରମ ବିଶ୍ରାମ । ଏହା ଜୀବନର ଅନ୍ତିମ ଲକ୍ଷ୍ୟ । ଏପରି ସିଦ୍ଧାନ୍ତବାଦୀ ମନୁଷ୍ୟ ମହାନ ବ୍ୟକ୍ତିତ୍ୱର ଅଧିକାରୀ । ସମ୍ମାନନୀୟ ମହାନୁଭବୀ ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା ତାଙ୍କର ସୃଜନତାର ମହାନତା ଏହି ଅମୃତବିନ୍ଦୁ ନାମକ ପୁସ୍ତକରେ ଉପରୋକ୍ତ ସମସ୍ତ ଭାବାବେଗକୁ ଆପଣାର ଲେଖନୀ ମୁନରେ ପରିପ୍ରକାଶ କରିଛନ୍ତି । ଇତି ପୂର୍ବରୁ ସେ ଅଧ୍ୟାତ୍ମ୍ୟ ସାହିତ୍ୟ ଜଗତକୁ କେତେଗୋଟି ମହତ୍ୱପୂର୍ଣ୍ଣ ପୁସ୍ତକ ପ୍ରଦାନ କରିଛନ୍ତି । ହେଲେ ମଧ୍ୟ ଏହି 'ଅମୃତ ବିନ୍ଦୁ' ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ବେଦ, ଉପନିଷଦ, ଗୀତା, ଭାଗବତ, ରାମାୟଣ ଆଦି ଧର୍ମଗ୍ରନ୍ଥର ସାରମର୍ମକୁ ନିଜ ଅନୁଭବରେ ରୂପ ଦେବା ସହିତ ଅନେକ ସନ୍ଥ ମହାତ୍ମାଙ୍କର ଆପ୍ତବାକ୍ୟକୁ ଉପସ୍ଥାପନା କରି ସିଦ୍ଧାନ୍ତ ପ୍ରକଟ କରିଛନ୍ତି ।

ଏଥିରେ ଦିଆଯାଇଥିବା ସାମାଜିକ ଶିକ୍ଷା, ନୈତିକ ଶିକ୍ଷା ସହିତ ଆଧ୍ୟାତ୍ମିକ ବିଚାରକୁ ହୃଦୟଙ୍ଗମ କରି ଗ୍ରହଣ କଲେ ପ୍ରତ୍ୟେକ ମନୁଷ୍ୟର ନିଶ୍ଚିତ ଆତ୍ମକଲ୍ୟାଣ ସାଧିତ ହେବ । ଆଶା କରେ ସେ ତାଙ୍କର ସମସ୍ତ ଦିବ୍ୟ ଅନୁଭୂତିକୁ ଏମିତି ସମସ୍ତଙ୍କୁ ବାଣ୍ଟି ଚାଲିଥାନ୍ତୁ । ଗୁରୁ ଗୋବିନ୍ଦଙ୍କର କୃପାଲାଭ କରି ପରମାନନ୍ଦ ଉପଲବ୍ଧ କରନ୍ତୁ ।

ତଥାସ୍ତୁ

ଭଗବାନ ସୋଽହମ୍‌ସ୍ୱାମୀ କୃପାପାତ୍ର

ଅଖଣ୍ଡାନନ୍ଦ ସ୍ୱାମୀ

(ପରିବ୍ରାଜକ ସନ୍ନ୍ୟାସୀ)

# : ଆତ୍ମକଥନ :

ସତ୍ୟଂବଦ- ଧର୍ମଂଚର-ସ୍ୱାଧ୍ୟାୟାତ୍ ମା ପ୍ରମଦ, ପ୍ରଭୃତି ଶ୍ରୁତିବାକ୍ୟ, ଗୁରୁବର ଋଷି, ବ୍ରହ୍ମଚାରୀଙ୍କ ପ୍ରତି ନିର୍ଦ୍ଦେଶ କରିଛନ୍ତି । ମନୁଷ୍ୟ କିପରି ଜୀବନର ପଦକ୍ଷେପରେ ସଦାଚାରୀ ତଥା ଅଗ୍ରଗାମୀ ହୋଇ ପାରିବ ସେଥିପାଇଁ ଏହି ଶାଶ୍ୱତ ପ୍ରେରଣା । ହୁଏତ ସେ କାଳରେ ଜୀବନଧାରା ସାଂପ୍ରତିକପରି ବହୁଧା ବିଭାଜିତ କିମ୍ବା ଜଟିଳ ହୋଇ ନଥିଲା । ମୂଲ୍ୟବୋଧ ନୀତିନିଷ୍ଠ ଏବଂ ଆଦର୍ଶ ଆଧାରିତ ଥିଲା ତଥା ଲକ୍ଷ୍ୟ ଥିଲା ଈଶ୍ୱରପ୍ରାପ୍ତି । ବିବିଧ ବାହ୍ୟ ଏବଂ ଆଭ୍ୟନ୍ତର କାରଣ ହେତୁରୁ ସମଗ୍ରଜୀବନ ସଂଗ୍ରହ ସଂଚୟରେ ବ୍ୟତୀତ ହୋଇ ଯାଉଛି । ଅନ୍ତହୀନ ପଥରେ ଧାବମାନ ଅବସ୍ଥାରେ ଜୀବନ ଅନ୍ତିମ ପର୍ଯ୍ୟାୟରେ ଉପସ୍ଥିତ; ଶରୀର ସାମର୍ଥ୍ୟହୀନ, ମନ ବିକ୍ଷିପ୍ତ ସ୍ଥିତିରେ କେବେ ଦୁର୍ଘଟଣା ବା ଆଘାତ ଯୋଗୁ ବାସ୍ତବତାକୁ ଉପଲବ୍ଧି କରି ସେ ଯାହା ସବୁ କରିଗଲା ତାହା ଅସାର ବୋଲି ମନକୁ ଆସୁଛି ।

ସୁତରାଂ ଯାହା ବହୁ ପୂର୍ବରୁ ଆରମ୍ଭ କରିବାର ଥିଲା ତାହା ଯଥୋଚିତ ସମୟରେ କରିପାରି ନଥିବାରୁ ଘୋର ଅନ୍ତର୍ଦ୍ଦାହ ହେଉଛି । କାଳେକାଳେ ମହାପୁରୁଷ, ଯୋଗୀ, ସନ୍ନ୍ୟାସୀ, ଋଷି, ମହାତ୍ମା ସାଧାରଣ ଜନତାକୁ ସଦାଚାରୀ ଏବଂ ଭଗବତ୍ ଉନ୍ମୁଖ କରିବା ନିମନ୍ତେ ଋଷିବାକ୍ୟ(ଆପ୍ତବାକ୍ୟ) ମାନ ଶାସ୍ତ୍ରଦୃଷ୍ଟ ।

ସାଂପ୍ରତିକ କାଳର ସାଧୁ, ସୁଧୀ, ମହାତ୍ମାବୃନ୍ଦ ଏ ଦିଗରେ ଊଣା ପ୍ରୟାସ କରିନାହାଁନ୍ତି । ସେହି ଧାରାରେ ଅନୁବର୍ତ୍ତୀ ହୋଇ ମହାନ୍‌ଗୁରୁ, ଶାସ୍ତ୍ର-ମହାତ୍ମାଙ୍କ ବଚନକୁ ଆଧାର କରି ମାଳାଟିଏ ଗୁନ୍ଥିବାରେ ପ୍ରୟାସୀ ହୋଇଛି ମାତ୍ର, 'ଇଦଂ ନ ମମ' ।

ଆଶା କରିବି ଏହାର ପଠନ ପାଠନରେ କାହାର କିଂଚିତ୍ ଆତ୍ମୀକ କଲ୍ୟାଣ ହୋଇପାରିଲେ ଶ୍ରମ ସାର୍ଥକ ହେବ ।

ଇତି

ବିନୀତ

ସୁଶାନ୍ତ କୁମାର ପଣ୍ଡା



'ଋତଂ' ଅର୍ଥାତ୍ ପାରମାର୍ଥିକ ସତ୍ୟ । ଶାସ୍ତ୍ର ଅଧ୍ୟୟନ ତଥା ଶ୍ରବଣଦ୍ୱାରା ଆମେ ଏହି ସତ୍ୟ ସମ୍ବନ୍ଧରେ ଅବଗତ ହୋଇଥାଉ । ଏହିପ୍ରକାର ଜୀବନର ପରମ ସତ୍ୟକୁ ବାରମ୍ବାର ମନନ କରି ତଥା ସେହି ସତ୍ୟକୁ ଜୀବନର ବ୍ୟବହାରରେ ଆଣି ନିଜ ବୁଦ୍ଧିକୁ ଶୁଦ୍ଧ କରିବା ଆବଶ୍ୟକ । ଏଭଳି ଶୁଦ୍ଧ ବୁଦ୍ଧିରେ ଆଦର୍ଶଗୁଡ଼ିକ ସ୍ଥାପନା ହୋଇଯାଏ । ପରିଣାମସ୍ୱରୂପ ଆମର ଯେଭଳି ବିଚାର ଶୁଦ୍ଧ ଓ ସାତ୍ତ୍ୱିକ; ସେହିପରି ଆମର ବାଣୀରେ ମଧ୍ୟ ସତ୍ୟ, ଅହିଂସା ଓ ପ୍ରେମ ପ୍ରକଟ ହୁଏ ।

# ସରସ୍ୱତୀ ସ୍ତୋତ୍ରମ୍

ଯା କୁନ୍ଦେନ୍ଦୁ ତୁଷାର ହାର ଧବଳା ଯା ଶୁଭ୍ରବସ୍ତ୍ରା ବୃତା
ଯା ବୀଣା ବରଦଣ୍ଡ ମଣ୍ଡିତକରା ଯା ଶ୍ୱେତ ପଦ୍ମାସନା ।
ଯା ବ୍ରହ୍ମା ଚ୍ୟୁତ ଶଂକର ପ୍ରଭୃତିଭିଃର୍ଦ୍ଦେବୈ ସଦା ବଂଦିତା
ସା ମାଂ ପାତୁ ସରସ୍ୱତୀ ଭଗବତୀ ନିଃଶେଷ ଜାଡ୍ୟାପହା ।

ଆଶାସୁରାଶୀ ଭବଦଙ୍ଗ ବଲ୍ଲୀ ଭାସୈବ ଦାସୀ କୃତ ଦୁଗ୍ଧ ସିନ୍ଧୁମ୍ ।
ମନ୍ଦସ୍ମିତୈ ର୍ନିନ୍ଦିତ ଶାରଦେନ୍ଦୁଂ ବନ୍ଦେଽରବିନ୍ଦାସନ ସୁନ୍ଦରି ତ୍ୱାମ୍ ।

ଶାରଦା ଶାରଦାମ୍ଭୋଜ ବଦନା ବଦନା ମ୍ବୁଜେ
ସର୍ବଦା ସର୍ବଦା ସ୍ମାକଂ ସନ୍ନିଧିଂ ସନ୍ନିଧିଂ କ୍ରିୟାତ୍ ।
ସରସ୍ୱତୀଂ ଚ ତାଂ ନୌମି ବାଗାଧିଷ୍ଠାତୃ ଦେବତାମ୍
ଦେବତ୍ୱ ପ୍ରତି ପଦ୍ୟନ୍ତେ ଯଦନୁ ଗ୍ରହତୋ ଜନାଃ ।
ପାତୁ ନୋ ନିକଷା ଗ୍ରାବା ମତି ହେମ୍ନଃ ସରସ୍ୱତୀ
ପ୍ରାଜ୍ଞେତର ପରିଚ୍ଛେଦଂ ବଚ ସୈବ କରୋତି ଯା ।
ଶୁକ୍ଳାଂ ବ୍ରହ୍ମ ବିଚାର ସାର ପରମାଦ୍ୟାଂ ଜଗତ୍ ବ୍ୟାପିନୀଂ
ବୀଣା ପୁସ୍ତକ ଧାରିଣୀ ମଭୟଦାଂ ଜାଡ୍ୟାଂଧକାର ପହାମ୍ ।
ହସ୍ତେ ସ୍ଫାଟିକ ମାଳିକାଂ ବିଦଧତୀଂ ପଦ୍ମାସନେ ସଂସ୍ଥିତାଂ
ବନ୍ଦେ ତାଂ ପରମେଶ୍ୱରୀଂ ଭଗବତୀଂ ବୁଦ୍ଧିପ୍ରଦାଂ ଶାରଦାମ୍ ।

ବୀଣାଧରେ ବିପୁଳ ମଂଗଳ ଦାନଶୀଳ ଭକ୍ତାର୍ତ୍ତି ନାଶିନି ବିରଞ୍ଚି ହରୀଶ ବନ୍ଦ୍ୟେ
କୀର୍ତ୍ତି ପ୍ରଦେଽଖିଳ ମନୋରଥଦେ ମହାର୍ହେ ବିଦ୍ୟା ପ୍ରଦାୟିନି ସରସ୍ୱତୀ ନୌମି ନିତ୍ୟମ୍ ।
ଶ୍ୱେତାବ୍ଜ ପୂର୍ଣ୍ଣ ବିମଳା ସନ ସଂସ୍ଥିତେ ହେ ଶ୍ୱେତାମ୍ବରାବୃତ ମନୋହର ମଂଜୁ ଗାତ୍ରେ
ଉଦ୍ୟନ୍ ମନୋଜ୍ଞ ସିତପଙ୍କଜ ମଂଜୁଳାସ୍ୟେ ବିଦ୍ୟାପ୍ରଦାୟିନୀ ସରସ୍ୱତୀ ନୌମି ନିତ୍ୟମ୍ ।

ମାତ ସ୍ତ୍ୱଦୀୟ ପଦପଙ୍କଜ ଭକ୍ତି ଯୁକ୍ତା ଯେତ୍ୱାଂ ଭଜନ୍ତି ନିଖିଳାନ ପରାନ୍ ବିହାୟ
ତେ ନିର୍ଜରତ୍ୱମିହ ଯାନ୍ତି କଳେବରେଣ ଭୂବହ୍ନି ବାୟୁ ଗଗନାମ୍ବୁ ବିନିର୍ମିତେନ ।
ମୋହାନ୍ଧକାର ଭରିତେ ହୃଦୟେ ମଦୀୟେ ମାତଃ ସଦୈବ କୁରୁ ବାସ ମୁଦାର ଭାବେ
ସ୍ୱୀୟା ଖିଳାବୟବ ନିର୍ମଳ ସୁପ୍ରଭାଭିଃ ଶୀଘ୍ରଂ ବିନାଶୟ ମନୋଗତ ମନ୍ଧକାରମ୍ ।
ବ୍ରହ୍ମା ଜଗତ୍ ସୃଜତି ପାଳୟତୀନ୍ଦିରେଶଃଶମ୍ଭୁ ବିନାଶୟତି ଦେବୀ ତବ ପ୍ରଭାବୈଃ
ନସ୍ୟାତ୍ କୃପା ଯଦି ତବ ପ୍ରକଟ ପ୍ରଭାବେ ନସ୍ୟୁ କଥଞ୍ଚିଦପି ତେ ନିଜକାର୍ଯ୍ୟ ଦକ୍ଷା ।

ଲକ୍ଷ୍ମୀ ମେଧା ଧରା ପୁଷ୍ଟି ଗୌରୀ ତୁଷ୍ଟିଃ ପ୍ରଭାଧୃତିଃ
ଏତାଭିଃ ପାହି ତନୁଭିଃ ରକ୍ଷାଭିଃ ମାଂ ସରସ୍ୱତୀ ।
ସରସ୍ୱତୌ ନମୋ ନିତ୍ୟଂ ଭଦ୍ରକାଲ୍ୟୈ ନମୋ ନମଃ
ବେଦ ବେଦାନ୍ତ ବେଦାଙ୍ଗ ବିଦ୍ୟା ସ୍ଥାନେଭ୍ୟ ଏବଚ ।
ସରସ୍ୱତୀ ମହାଭାଗେ ବିଦ୍ୟେ କମଳ ଲୋଚନେ
ବିଦ୍ୟା ରୂପେ ବିଶାଳକ୍ଷି ବିଦ୍ୟାଂ ଦେହି ନମୋସ୍ତୁତେ ।
ଯଦକ୍ଷରଂ ପଦଂଭ୍ରଷ୍ଟଂ ମାତ୍ରାହୀନଂ ଚ ଯଦ୍ ଭବେତ
ସତ୍ ସର୍ବଂ କ୍ଷମ୍ୟତାଂ ଦେବି ପ୍ରସୀଦ ପରମେଶ୍ୱରୀ ।
ଇତି ସରସ୍ୱତୀ ସ୍ତୋତ୍ର ସଂପୂର୍ଣ୍ଣମ୍ ।



୧

ଅଜ୍ଞତା ହେତୁ ଆମେ ଆମର ବାସ୍ତବ ସ୍ୱରୂପ ବିସ୍ମୃତ ହୋଇଯାଇଛୁ । ସେହି କାରଣରୁ ଆମକୁ ଦୁଃଖ ଭୋଗ କରିବାକୁ ହେଉଛି । ଅଜ୍ଞତା ହେଉଛି ଆମ ସମ୍ମୁଖରେ ଥିବା ପ୍ରକାଶମାନ ବିଶ୍ୱ । ଅବାସ୍ତବ ଦୁନିଆ (ଯେ ସର୍ବଦା ପରିବର୍ତ୍ତନଶୀଳ) ଆମକୁ ସତ୍ୟବୋଧ ହେଉଛି । ଏହା ହିଁ ବାସ୍ତବ ଅଜ୍ଞତା ।

ଭାବନ୍ତୁ- ଏହି ଶରୀର ଯାହା ନଶ୍ୱର ବିନାଶଶୀଳ ଏବଂ ନାନା ପ୍ରକାର ଦୁର୍ଗନ୍ଧ· ବସ୍ତୁର ସମାହାର ତାହା ଆମକୁ ସୁନ୍ଦର ଦେଖାଯାଉଛି । ଏହା ହିଁ ଅଜ୍ଞତା ।

ଥରେ ଭାବନ୍ତୁ: ଇନ୍ଦ୍ରିୟ ଭୋଗ ଆମକୁ ସୁଖ ଦିଏ, ଆମେ ଅଜ୍ଞତା ବଶତଃ ଜାଣି ପାରୁ ନାହିଁ ଯେ ତାହା (ସେହି ସୁଖ) ଆମକୁ ପୀଡ଼ା ଏବଂ ଦୁଃଖ ଦେଇଥାଏ । ଏହା ହେଉଛି ଅଜ୍ଞତା ।

ଭାବି ଦେଖନ୍ତୁ ଯେ, ଆମର ସଖା ସଂବଂଧିମାନେ ବସ୍ତୁତଃ ମୋର ନୁହଁନ୍ତି- ଏହା ହେଉଛି ଅଜ୍ଞତା ।

୨

ଧ୍ୟାନ ଅଭ୍ୟାସରେ ନିତ୍ୟ ଯୁକ୍ତ ହୁଅ । ଅଶାନ୍ତ ମନ ସମସ୍ତ ସମସ୍ୟାର ମୂଳ ଆଧାର । ଯେବେ ତୁମେ ଧ୍ୟାନ ଅଭ୍ୟାସ କରିବ, ତୁମେ ଅର୍ଦ୍ଧଚେତନ ଏବଂ ଅଚେତନ ମନର ଗଭୀରତାକୁ ଜ୍ଞାତ ହେବ । ସମସ୍ୟାର ଦ୍ୱନ୍ଦ୍ୱରେ ଛନ୍ଦି ହେବା ପରିବର୍ତ୍ତେ ତୁମେ ଅଚେତନ ମନକୁ କ୍ରିୟାଶୀଳ କରିପାରିବ । ତୁମେ ଆପଣାକୁ ପ୍ରଣାମ କର । ତୁମେ ଦେଖିବ ଯେବେ ଉଦ୍‌ବିଗ୍ନ ମନ ସମସ୍ୟାରେ ଜଟିଳ ହେଉଛି, ସାମାନ୍ୟ ଆଲୋକରଶ୍ମୀ ତାହାକୁ ଅତି ସହଜରେ କ୍ଷଣକ ମଧ୍ୟରେ ବିନାଶ କରିଦେବ ।

୩

ଅନେକ ଭାବନ୍ତି ମୋର ଶରୀର ସହ ବିଶେଷ ଆକର୍ଷଣ ନାହିଁ । ପତ୍ନୀ ପ୍ରତି ମମତ୍ୱ ନାହିଁ, ସଂତାନମାନଙ୍କ ପ୍ରତି ମୋହ ନାହିଁ, ସଂପତ୍ତି ପ୍ରତି ମଧ୍ୟ ଆକର୍ଷଣ ନାହିଁ, ମୁଁ ଏ ସବୁଥିରେ ବାଂଧି ହୋଇ ନାହିଁ ।

(ମୁଁ) ଇଚ୍ଛା କରିବା ମାତ୍ରେ ଏ ସମସ୍ତଙ୍କୁ (ମନରୁ) ତ୍ୟାଗ କରି ଦେଇପାରେ କିନ୍ତୁ ଯେତେବେଳେ କୌଣସି ଅଘଟଣ ଅଭାବନୀୟ ସ୍ଥିତି ଉପୁଜେ, ଭିତରୁ କିମ୍ବା ବାହାରୁ କୌଣସି ଦୁର୍ଘଟଣା ଅକସ୍ମାତ୍ ଆସି ପହଂଚେ, ଦୁର୍ଭାଗ୍ୟ ବଶତଃ ଆମେ ଅଧୋମୁଖୀ ହୋଇ ଥାଉଁ, ସେତେବେଳେ ତାଙ୍କର ଏହି ମିଥ୍ୟା ବୈରାଗ୍ୟ ତୁଣ୍ଡରେ କହୁଥିବା ଜ୍ଞାନ ଦୂରେଇ ଯାଏ, ସେମାନେ ଚଳତ୍ ଶକ୍ତି ହରାଇ ବସନ୍ତି । ମାୟାର ମୋହିନୀ ଶକ୍ତି ସେମାନଙ୍କୁ କବଳିତ କରି ପକାଏ । ଯେଉଁମାନେ ପୂର୍ବ ଜନ୍ମର ତପସ୍ୟା ବଳରୁ ବସ୍ତୁତଃ ସମସ୍ତ ସାଂସାରିକ ପ୍ରବଳ ଝଡ଼ ଝଂଜାରୁ ନିଜକୁ ମୁକ୍ତ କରି ଆପଣାକୁ ମୋହ ବନ୍ଧନରୁ ମୁକ୍ତ କରିଥାନ୍ତି ।

ସେହିମାନଙ୍କୁ ମୁମୁକ୍ଷୁ କୁହାଯାଏ । ସେହିମାନେ ହିଁ ମୁକ୍ତି-କାମୀ, ସେହିମାନେ ଜନ୍ମ ମୃତ୍ୟୁ ଚକ୍ରରୁ ନିସ୍ତାର ପାଇବାର ଯୋଗ୍ୟ ।

୪

ଜନ୍ମ ମୃତ୍ୟୁ ରହସ୍ୟ ଜାଣିବା ପାଇଁ ବହୁ ରହସ୍ୟମୟ ମାର୍ଗ ରହିଛି । କିନ୍ତୁ ଧ୍ୟାନ ହେଉଛି ବାସ୍ତବ ମାର୍ଗ । ସଂସାରରେ ଈଶ୍ୱରଙ୍କ ସଂତାନ ଭାବେ ବଂଚିବାର ଶିକ୍ଷା । ମୃତ୍ୟୁ ମନୁଷ୍ୟମାନଙ୍କ ପାଇଁ ଏକ ଆତଙ୍କ । କାରଣ ସେ ଜୀବନରୁ ଈଶ୍ୱରଙ୍କୁ ତ୍ୟାଗ କରିଦେଇଛି । ପୀଡ଼ାଦାୟକ ବିଷୟ ଆମକୁ ଭୟ ବ୍ୟାକୁଳିତ କରନ୍ତି । କାରଣ ଆମେ ତା'ର ରହସ୍ୟ ଓ ଉଦ୍ଦେଶ୍ୟ ବୁଝି ନାହିଁ କିନ୍ତୁ ଆମେ ଯେବେ ସମସ୍ତ ବସ୍ତୁକୁ ଈଶ୍ୱର ଜ୍ଞାନ କରିବା ଆମର ଭୟ ଚାଲିଯିବ ।

ଆମେ ଜନ୍ମ ମୃତ୍ୟୁ ଚକ୍ରରେ ଭ୍ରମଣ କରୁଅଛୁ । ମୃତ୍ୟୁ ଶବ୍ଦ ଏକ ବିରାଟ ଭ୍ରାନ୍ତି । ତୁମର ଯେବେ ଜୀବନପଥ ସମାପ୍ତ ହୋଇଯିବ, ତେବେ ମାନବ ଶରୀର ତ୍ୟାଗ କରି ଅଦୃଶ୍ୟ ଜଗତକୁ ଚାଲିଯିବ ।

୫

ସମସ୍ତଙ୍କୁ ସମଭାବରେ ଦର୍ଶନ କରିବା ହେଉଛି ଭକ୍ତର ସ୍ୱଭାବ । ସେ ଶତ୍ରୁ ଭାବରେ କାହାରିକୁ ଦେଖେ ନାହିଁ, ତା'ର ହୃଦୟ ବ୍ୟାପକ । ସେ କାହାରି ସହିତ ମମତା ରଖେ ନାହିଁ । ସ୍ଥାନ ବା ଦ୍ରବ୍ୟ ସହ ମଧ୍ୟ ନୁହେଁ । ସଂକୀର୍ଣ୍ଣତାରୁ ସଦା ଦୂରରେ ଥାଏ । ସୁଖ- ଦୁଃଖରେ, ଶୀତ-ଉଷ୍ଣରେ ସମଭାବ ରଖିଥାଏ । ଟଙ୍କା/ ସୁନାକୁ ପଥର ଖଣ୍ଡ ପରି ଭାବିଥାଏ । ସେ କ୍ରୋଧ, ଆସକ୍ତିରୁ ମୁକ୍ତ ରହେ ।

ନାରୀ ସମାଜକୁ ମାତା, ଭଗ୍ନୀ, କନ୍ୟା ଜ୍ଞାନ କରିଥାଏ । ହରି ନାମକୁ ସଦା ମୁଖରେ ଧାରଣ କରିଥାଏ । ମନ ଅନ୍ତର୍ମୁଖୀ ହୋଇଥିବାରୁ ଆନନ୍ଦ ଓ ଶାନ୍ତିରେ ବିଚରଣ କରେ । ସେ ସଦା ଶାନ୍ତି ସନ୍ତୋଷରେ ସମାହିତ ହୋଇଥାଏ ।

୬

ଈଶ୍ୱରଙ୍କୁ ପ୍ରାପ୍ତ କରିବା, ତାଙ୍କୁ ଅନୁଭବ କରିବା ତାଙ୍କ ମଧ୍ୟରେ ଏକାକାର ହୋଇଯିବା ଏକ ପ୍ରାପ୍ତ ବସ୍ତୁ ନୁହେଁ; ଯାହା ଆମ ଜୀବନ ବାହାରେ ଥିଲା । ତୁମେ ତ ସର୍ବଦା ତାଙ୍କ ମଧ୍ୟରେ ରହିଛ । ତୁମର ଆତ୍ମା ଏବଂ ସେ ପୃଥକ୍ ନୁହଁନ୍ତି । କେବଳ ତୁମେ ଅଜ୍ଞତାର କଳା ବାଦଲ ତଳେ ଢାଙ୍କି ହୋଇଛ । ଫଳରେ ତୁମେ (ବିଷୟରେ) ତହିଁରେ ସଂପୃକ୍ତ ହୋଇଅଛ । ଅଜ୍ଞତା ତୁମକୁ ଶରୀର ସହ ଏକାତ୍ମ କରିଛି । ତୁମ ସମଗ୍ର ଜୀବନ ତୁମ ବର୍ହିମୁଖୀ ପ୍ରକୃତିର ପରିପୋଷଣ ତଥା ତୁଷ୍ଟିକରଣ ନିମିତ୍ତ କେନ୍ଦ୍ରୀଭୂତ ହୋଇଯାଇଛି, ତେଣୁ ଜାଗିଉଠ; ଘୋଷଣା କର କି ମୁଁ ଅମୃତ ଶକ୍ତି, ପୂର୍ଣ୍ଣ ଶକ୍ତିମାନ ଆନନ୍ଦମୟ ଏବଂ ଶାନ୍ତିମୟ । ତୁମେ ଦିବ୍ୟ ଜ୍ଞାନ ଏବଂ ଆନନ୍ଦମୟ । ବାଦଲ ଦୂରୀଭୂତ କରି ନିଜ ସ୍ୱରୂପରେ ଠିଆହୁଅ । ତୁମେ ଆନନ୍ଦ, ଅଟଳ ସତ୍ୟର ମାଧୁର୍ଯ୍ୟ ଦିବ୍ୟତ୍ୱ ଜ୍ଞାନରେ ଉଦ୍‌ଭାସିତ, ସମୁନ୍ନତ ପ୍ରକୃତିର ଅବତାର ।

୭

ଗଭୀର ଇଚ୍ଛା ସହିତ ଆପଣଙ୍କର ସାଧନା ସ୍ୱକର୍ମ, ସ୍ୱଧର୍ମ, ଯୋଗଧର୍ମ, ମାନବଧର୍ମ, ସେବାଧର୍ମ, ଅଧ୍ୟାତ୍ମଧର୍ମ, ରାଷ୍ଟ୍ରଧର୍ମ ଏବଂ ସମଷ୍ଟିଧର୍ମର ପାଳନ ବା ନିର୍ବହନ ସମସ୍ତ ପ୍ରାମାଣିକତା, କୁଶଳତା, ଦିବ୍ୟତା ବା ସାତ୍ତ୍ୱିକତା ସହ କରିବା ଉଚିତ୍ । ପ୍ରାରବ୍ଧ ସଂସ୍କାର, ବାସନା, ଅଭ୍ୟାସ, ଦୋଷ ଅଥବା ଅଜ୍ଞାନ, ଆଗ୍ରହ ସ୍ୱାର୍ଥ, ଅହଂକାର ବା ରାଗ ଦ୍ୱେଷର କାରଣ ସୃଷ୍ଟିହେବା ଉପରେ ମଧ୍ୟ ଏକ କ୍ଷଣ ପାଇଁ ଅଜ୍ଞାନ, ଅଶ୍ରଦ୍ଧା, ଅକର୍ମଣ୍ୟତା ଅଶୁଭ ବା କୌଣସି ମଧ୍ୟ ଦୁର୍ଗୁଣ, ଦୋଷ ଦୁର୍ବଳତା ବା ପରାଧୀନତାର ଅଧୀନ ହୋଇ ପାରି ନଥାଏ ।

୮

ଆମର ଯୋଗନିଷ୍ଠା, ଜ୍ଞାନଯୋଗ, ଭକ୍ତିଯୋଗ, କର୍ମଯୋଗ ଏବଂ ଅଷ୍ଟାଂଗଯୋଗ ନିଷ୍ଠା, ଗୁରୁ ନିଷ୍ଠା, ଋଷିନିଷ୍ଠା, ଶାସ୍ତ୍ରନିଷ୍ଠା, ବେଦନିଷ୍ଠା, ଆତ୍ମନିଷ୍ଠା, ବ୍ରହ୍ମନିଷ୍ଠା,

ମାତୃନିଷ୍ଠା ଏବଂ ରାଷ୍ଟ୍ର ନିଷ୍ଠା ସଦା ଅଖଣ୍ଡ ଅଟଳ, ଅବିଚଳିତ, ବିକଳ୍ପ ରହିତ ହେବା ଉଚିତ୍ । ଯେତେବେଳେ ଆମେ ଏକନିଷ୍ଠ ଓ ଧ୍ୟେୟନିଷ୍ଠ ହୋଇ ଦିବ୍ୟ ଚେତନାରେ ସଦା ପ୍ରତିଷ୍ଠିତ ରହି ଜୀବନରେ ସର୍ବବିଧ ସଫଳତା, ସମୃଦ୍ଧି ବିଜୟ, ସୁଖ ଶାନ୍ତି ଏବଂ ପୂର୍ଣ୍ଣ ସନ୍ତୁଷ୍ଟି ହେବା ।



ଯୋଗମୟ ଆଧ୍ୟାତ୍ମିକ ଜୀବନ, ପରିବାର, ସମାଜ, ରାଷ୍ଟ୍ର ଏବଂ ବିଶ୍ୱର ନିର୍ମାଣ ହିଁ ଆମର ଲକ୍ଷ୍ୟ ଏବଂ ସଂକଳ୍ପ । ରାଷ୍ଟ୍ର ଏବଂ ବିଶ୍ୱ ଯୋଗମୟ ହେଲେ ସଂସାରରେ ରୋଗ, ନିଶା, ହିଂସା, ଅନୀତି ଏବଂ କୌଣସି ଅମାନବୀୟ କୃତ୍ୟ ହୋଇନପାରେ । ଡ୍ରଗ, ନିଶା ସହିତ ଅଶ୍ଳୀଳତା ଏବଂ ହିଂସା ବା ଯୁଦ୍ଧକୁ ଘୃଣା କରିବା ଓ ଲୁଟ୍ ମଧ୍ୟ ସ୍ୱତଃସ୍ଫୂର୍ତ୍ତ ଭାବେ ବଂଦ ହୋଇଯିବ ଏବଂ ଏକ ସୁନ୍ଦର ସୁସ୍ଥ, ସମୃଦ୍ଧ, ସୁଖପ୍ରଦ ଦୁନିଆ ଗଢ଼ିଉଠିବ ।



ରାଷ୍ଟ୍ର ଏବଂ ବିଶ୍ୱର ସମସ୍ତ ସାତ୍ତ୍ୱିକ ଶକ୍ତିକୁ ବେଦାନୁସାରେ ସଂଗଚ୍ଛାଧ୍ୱଂ ସଂବଦଧ୍ୱମ୍ ସଂବୋମନାଂ ସିଜାନତାମ୍(ଋଗ୍‌ବେଦ) ସଂଗଠିତ ହୋଇ ସମାଜ ରାଷ୍ଟ୍ର ଏବଂ ବିଶ୍ୱକୁ ଏକ ଦିବ୍ୟ ନେତୃତ୍ୱ ପ୍ରଦାନ କରିବା ଉଚିତ୍ । ଏହାର ମୂଳ ସିଦ୍ଧାନ୍ତ ହିଁ ନିର୍ବାଣ ମୂଳକ ନିର୍ମାଣ, ନିବୃତ୍ତି ମୂଳକ ନିବୃତ୍ତି, ଅଭ୍ୟୁଦୟ ଆଧାରିତ ନିଃଶ୍ରେୟସ, ପ୍ରେମମୂଳକ ଶ୍ରେୟ, ଅପରାବିଦ୍ୟା ଆଧାରିତ ପରାବିଦ୍ୟା, ଭୌତିକତା ଏବଂ ଆଧ୍ୟାତ୍ମିକତାର ସମନ୍ୱିତ ବିକାଶ ଏବଂ ଗୌରବ ।

ଆସନ୍ତୁ ଆମେ ସମସ୍ତେ ମିଳିମିଶି ନିଜେ ଏହି ପଥରେ ଆଗକୁ ଚାଲିବା ଓ ସଂସାରକୁ ଚଳାଇବା ।



ଏହି ଭାରତ ବର୍ଷରେ ଜନ୍ମିତ ବିଦ୍ୱାନ ବ୍ରହ୍ମବେତ୍ତାମାନଙ୍କ ସଂପୂର୍ଣ୍ଣ ବିଶ୍ୱତୋମୁଖୀ ଚରିତ୍ର, ଏହି ଭାରତ ଭୂମିର ଜନ୍ମ ଆଦିକାଳରୁ ହୋଇଛି । ଏହା ଗୁରୁ ଓ ବ୍ରହ୍ମା ଦେବତାଙ୍କର, ବୀର ବୀରାଂଗନା ମାନଙ୍କର ଏବଂ ଋଷି ଋଷିକାମାନଙ୍କର ଲୀଳାଭୂମି । ତ୍ୟାଗ ଓ ତପସ୍ୟାର ପ୍ରତିମୂର୍ତ୍ତି ଶ୍ରୀରାମ ଓ ଯୋଗୀରାଜ ଶ୍ରୀକୃଷ୍ଣଙ୍କ ଏହା ବିହାର ସ୍ଥଳୀ । ସଂପୂର୍ଣ୍ଣ ରାଷ୍ଟ୍ର ତଥା ବିଶ୍ୱ କଲ୍ୟାଣର ସଂକଳ୍ପକୁ ଧାରଣ କରି,

ସନ୍ନ୍ୟାସର ଧାରା ଏ ଯାବତ୍ ପ୍ରସରି ଆସଛି । ସନ୍ନ୍ୟାସୀମାନେ ସଂପୂର୍ଣ୍ଣ ତପ, ସାଧନା, କ୍ରିୟା ତଥା ଆଚରଣକୁ ବିଶ୍ୱମାନବର କଲ୍ୟାଣ ନିମିତ୍ତ ଉତ୍ସର୍ଗ କରି ଦେଇଥାନ୍ତି । ସାଂପ୍ରତିକ କାଳରେ ମଧ୍ୟ ଜୀବନର ମହାର୍ଘ ସଂଗୃହୀତ ସଂପଦକୁ ସାଧକ ସାଧିକାଗଣ ବିଶ୍ୱକଲ୍ୟାଣ ନିମିତ୍ତ ଅକାତରରେ ଦାନ କରି ଦେବାର ଦୃଷ୍ଟାନ୍ତ ଅବ୍ୟାହତ ରହିଛି । ସେହି ଭାରତମାତା, ତପୋଭୂମି, ପୁଣ୍ୟଭୂମି ଦେବଭୂମି, ତ୍ୟାଗ ଭୂମିକୁ ବାରମ୍ବାର ପ୍ରଣାମ ଜ୍ଞାପନ କରୁଛି ।

୧୨

ଏକ ଶକ୍ତି ଦୀପ୍ତ ମଧୁର ସ୍ୱର, ସଂଗୀତର ଜ୍ଞାନ, ଗଣିତ ଓ ଫଳିତ ଜ୍ୟୋତିଷର ଜ୍ଞାନ ଇତ୍ୟାଦି ମନୁଷ୍ୟ ବ୍ୟକ୍ତିତ୍ୱରେ ସଂଯୁକ୍ତ ହୋଇଥାଏ । ଜଣେ ବ୍ୟକ୍ତି ଅନ୍ୟ ବ୍ୟକ୍ତି ସହିତ କିପରି ନିଜକୁ ଖାପଖୋଇ ଚଳିବ ତାହା ଜାଣିବା ଉଚିତ୍ । ତୁମେ ଭଦ୍ର ଭାବରେ ଓ ମାଧୁର୍ଯ୍ୟ ପୂର୍ଣ୍ଣ ବ୍ୟବହାର କର, ଏହା ଅଦ୍ଭୁତ ପ୍ରଭାବ ସୃଷ୍ଟି କରିବ । ତୁମେ ବିନୟୀ, ସାମାଜିକ ଶିଷ୍ଟତାପୂର୍ଣ୍ଣ ବ୍ୟବହାର କର । ତୁମେ ଅନ୍ୟକୁ ସମ୍ମାନାସ୍ପଦ ତଥା ବିଚାରଶୀଳ ବ୍ୟବହାର କର । ଯେ ଅନ୍ୟକୁ ସମ୍ମାନିତ କରେ ସମ୍ମାନ ତା' ପାଖକୁ ଫେରିଆସେ । ମାନବିକତା ସ୍ୱୟଂ ନିଜକୁ ସମ୍ମାନିତ କରିଥାଏ । ମାନବିକତା ଏପରି ଏକ ସଦ୍‌ଗୁଣ ଯାହା ଅନ୍ୟମାନଙ୍କ ହୃଦୟକୁ ଦ୍ରବୀଭୂତ କରିଥାଏ । ମାନବିକତା ସଂପନ୍ନ ବ୍ୟକ୍ତି ଏକ ଶକ୍ତିଶାଳୀ ଚୁମ୍ବକ କିମ୍ବା ପରଶମଣି ।

୧୩

ସଂପତ୍ତି ଓ ସୁଖ ପ୍ରାପ୍ତିର ଆକାଂକ୍ଷା ଈଶ୍ୱରାନୁଭୂତିରେ ପ୍ରମୁଖ ଅନ୍ତରାୟ । ବ୍ୟକ୍ତି ସେଥିପ୍ରତି ମୋହିତ ହେବାର ହେତୁ ହେଉଛି ତା' ଦେହାଭିମାନ । ଯଦି ମନୁଷ୍ୟ ଶରୀର ପ୍ରତି ଆକର୍ଷିତ, ସେହି ରୂପ (ସ୍ୱରୂପ) ହାଡ଼ ମାଂସର ସମାହାର । ସେ ବା କିପରି ଆଧ୍ୟାତ୍ମିକ ଜ୍ୟୋତି ପ୍ରାପ୍ତ କରିପାରିବ ? କିନ୍ତୁ ଯେ ଅପରର ସୁଖରେ ସୁଖୀ ହୁଏ, ଅନ୍ୟର ସୁଖରେ ସୁଖୀ ବା ଆନନ୍ଦିତ ହୁଅନ୍ତି, ଯେବେ କେହି ଜଣେ ଦୁଃଖରେ ଆକ୍ରାନ୍ତ ସେ କ୍ଷେତ୍ରରେ ସେ ସମୃଦ୍ଧି ପାଇଁ ଆଶା କରୁଅଛି ।

୧୪

ଯେଉଁ ବ୍ୟକ୍ତି ସମସ୍ତଙ୍କର ସୁଖ, ନିରାମୟ ତଥା ସକଳ ପୀଡ଼ନରୁ ମୁକ୍ତହେବା ଇଚ୍ଛାକରେ, ବସ୍ତୁତଃ ସେ ଜଣେ ମାନବ । ଯେ ଯାବତ୍ ସେ ଅପରର ଦୁଃଖରେ

ସମଦୁଃଖୀ ନହୋଇଛି, ସେ ଆଦୌ ମନୁଷ୍ୟ ପଦବାଚ୍ୟ ନୁହେଁ । ଅଧିକନ୍ତୁ ଯେ ଦୁଃଖରେ ସମଭାଗୀ ହୋଇଛି, ସେ ପୀଡ଼ା ପାଏ ନାହିଁ । କିନ୍ତୁ ଯେ ଅନ୍ୟର ସୁଖ-ଦୁଃଖରେ ସମଭାଗୀ ନହୋଇଛି ସେ ଦୁଃଖୀ ହେବା ନିଶ୍ଚିତ । ଯେ ସୁଖ କାମୀ ଧନୀ ହେବା ପାଇଁ ଲାଳାୟିତ, କିନ୍ତୁ ଯେ ଅନ୍ୟର ସୁଖରେ ସୁଖୀ ସେ ତା' ପ୍ରତି ଉନ୍ମୁଖ ହୋଇ ରହିଥାଏ ।

୧୫

ଈଶ୍ୱରଙ୍କୁ ପ୍ରାପ୍ତି କରିବାର ମାର୍ଗ ହେଉଛି ତାଙ୍କୁ ସ୍ମରଣ କରିବା, କାରଣ ସେ ଆମଠାରୁ ପୃଥକ୍ ନୁହଁନ୍ତି । ସୃଷ୍ଟିର ଆରମ୍ଭରୁ ସେ ଆମ ସହିତ ରହିଛନ୍ତି ଏବଂ ସେ ସର୍ବଦା ଆମ ସହିତ ଅଛନ୍ତି । ଆମେ ତାଙ୍କଠାରୁ ପଳାୟନ କରୁଛୁ କାରଣ ଆମର ମନ ଅନ୍ୟ ଜିନିଷରେ ବ୍ୟସ୍ତ ରହୁଛି ଏବଂ ସୀମିତ ବସ୍ତୁ ମଧ୍ୟରେ ଘୂରିବୁଲୁଛି । 'ମୁଁ କ୍ରୋଧୀ, ମୁଁ ଦୁଃଖୀ, ମୁଁ ଅବୁଝା', ଆମେ ଏହି ଶରୀର ନୋହୁ ଏବଂ ଅହଂକାର ନୋହୁ । ଆମେ ନିଜକୁ ଭାବ ପ୍ରବଣତା ସହ ଅଭ୍ୟାସ ସହିତ ଏବଂ ଅହଂକାରର ସୀମିତ ଭାବରେ ଅଭିବ୍ୟକ୍ତ କରୁଛୁ । ଆମେ ଈଶ୍ୱରଙ୍କ ସଂତାନ ତାଙ୍କ କରୁଣାର ପ୍ରତିମୂର୍ତ୍ତି । ଏହି ଭାବକୁ ଅଧିକରୁ ଅଧିକ ଜୀବନରେ ଉପଲବ୍‌ଧି ନହେବା ପର୍ଯ୍ୟନ୍ତ କେବେ ବି ସଂତୁଷ୍ଟ ହୋଇପାରିବ ନାହିଁ ।

ଯେବେ ତୁମେ ଆଳସ୍ୟ ବା ଅସୁଖୀ ହୋଇଛ, କାରଣ ହେଉଛି ତୁମେ ଈଶ୍ୱରଙ୍କ ପ୍ରତି ଯଥେଷ୍ଟ ଦୃଷ୍ଟି ଦେଇ ନାହିଁ । ତୁମେ ଅଧିକ ପରିମାଣରେ ସାଂସାରିକ ବସ୍ତୁ ଏବଂ ବିଷାଦ ଉପରେ ଅଧିକ ସଚେତନ ହୋଇଛ । ଧ୍ୟାନ ଉପରେ ଅଧିକ ଗୁରୁତ୍ୱ ଦେଇ ନାହଁ । ସଂସାରରେ ଈଶ୍ୱରଙ୍କ ଅପେକ୍ଷା କୌଣସି ବସ୍ତୁ ଅଧିକ ଆନନ୍ଦଦାୟକ, ଅଧିକ ମାଦକ, ତଥା ସଂତୁଷ୍ଟ ନାହିଁ । ସ୍ନେହମୟୀ ଜନନୀ ପିତା, ଈଶ୍ୱରୀୟ ବସ୍ତୁ, ବନ୍ଧୁଙ୍କଠାରୁ ମଧ୍ୟ ସେ ଅଧିକ ପ୍ରେମଶୀଳ । ସେ ଆମର ଏକ ଏବଂ କେବଳ ପ୍ରେମ ।

୧୬

ସମର୍ପଣର ବାସ୍ତବ ଅର୍ଥ ବୁଝିବାପରେ ହିଁ ସମର୍ପଣ ସଫଳ ହୋଇଥାଏ । ଏହି ଜ୍ଞାନ ବାରମ୍ବାର ବିଚାର ତଥା ଅନୁଶୀଳନ କରିବା ପରେ ହିଁ ହୁଏ । ଏହାର ପରିଣାମ ନିଶ୍ଚିତ ଭାବେ ଆତ୍ମସମର୍ପଣ । ମନ, ବଚନ ଓ କର୍ମ ଦ୍ୱାରା କୃତ

କୌଣସି ସମର୍ପଣ ଏବଂ ଜ୍ଞାନ ମଧ୍ୟରେ କୌଣସି ପ୍ରାର୍ଥକ୍ୟ ନାହିଁ। ସମର୍ପଣ ତେବେ ସଫଳ ହୁଏ, ଯେବେ ସେ ନିଃସନ୍ଦେହ ହୁଏ । ଏହା ଗବେଷଣାର ବିଷୟ ନୁହେଁ, ଭଗବାନଙ୍କଠାରୁ କିଛି ମାଗିବା ମଧ୍ୟ ନୁହେଁ। ଏପରି ସମର୍ପଣରେ ସବୁ ସମାହିତ ହୋଇଥାଏ । ଜ୍ଞାନ ଏବଂ ବୈରାଗ୍ୟ ଯାହା, ଭକ୍ତି ଏବଂ ପ୍ରେମ ମଧ୍ୟ ତାହା ।

କୌଣସି ଉପାୟରେ ଅହଂକାର ତଥା ମମତାର (ମମତ୍ୱ) ତ୍ୟାଗ କରିବା ହିଁ ମୁକ୍ତି। ପୁନଃ ପରସ୍ପର ଅନ୍ୟୋନ୍ୟଶ୍ରୟୀ।ଏଣୁ ଗୋଟିକର ନାଶରେ ଅନ୍ୟଟିର ବିନାଶର କାରଣ ହୋଇଥାଏ। ମନ-ବାକ୍ୟର ଅଗୋଚର ଏହି ମନସ୍ଥିତିରେ ପ୍ରାପ୍ତ ଅନେକଙ୍କ ପାଇଁ ଅହଂକାର ବାହାର କରିଦେବା ହେଉଛି ଜ୍ଞାନମାର୍ଗ। ମମତାର ତ୍ୟାଗ ହେଉଛି ଭକ୍ତିମାର୍ଗ। ଏ ଦୁଇ ମାର୍ଗରୁ କୌଣସି ଗୋଟିଏ ମଧ୍ୟ ପର୍ଯ୍ୟାପ୍ତ। ଭକ୍ତି ଓ ଜ୍ଞାନ ମାର୍ଗର ପରିଣାମ ମଧ୍ୟ ସମାନ। ଏଥିରେ ଶଂକା କରିବାର କୌଣସି ପ୍ରୟୋଜନ ନାହିଁ।

(ମହର୍ଷି ରମଣ)

୧୭

ପୁଷ୍ପର ସୁଗନ୍ଧରେ, ଚନ୍ଦନର ସୁବାସରେ, ଶିଶୁର ହସରେ, ସଂଗୀତର ଲୟ ଓ ତାଳରେ, କଳାକାରର କଳାରେ, ସମଗ୍ର ବିଶ୍ୱର ପରମାନନ୍ଦରେ, ଚନ୍ଦ୍ରମାର ଜ୍ୟୋସ୍ନାରେ, ସୂର୍ଯ୍ୟଙ୍କ କିରଣରେ, ଇନ୍ଦ୍ରଧନୁର ସପ୍ତରଂଗରେ, ଜଳପ୍ରପାତର ନର୍ତ୍ତନରେ, ଭକ୍ତର ବିହ୍ୱଳତାରେ ଭଜନ-କୀର୍ତ୍ତନ ଯୋଗ-ଯାଗ ତପସ୍ୟାରେ, କିଶଳୟର କୋମଳତାରେ, ଭ୍ରମରର ମୃଦୁଗୁଂଜନରେ, ପ୍ରାଚୀର ଲାଲିମାରେ, ଅମ୍ବୁଜର ମାଦକ ପରାଗରେ, ଜନନୀର ବତ୍ସଳତାରେ, ପିତାଙ୍କ ପ୍ରେମରେ, ଭକ୍ତର ଆକୁଳ ପ୍ରାର୍ଥନାରେ, ଆର୍ତ୍ତଜନର ଆକୁଳତାରେ, ହବନର ପବିତ୍ର ଅଗ୍ନିରେ, ପକ୍ଷୀମାନଙ୍କ କଳରବରେ, ଦୟାରେ, କରୁଣାରେ ମମତାର ମାଧୁର୍ଯ୍ୟରେ, ମାନବତାର ଊର୍ଦ୍ଧ୍ୱ ଗତିରେ, ଗଂଗାର ଲହରିରେ, କାନ୍ତ କୋମଳ ପ୍ରକୃତିରେ, ବର୍ଷା ଋତୁର ବାରିଧାରାରେ, ଋତୁରାଜର ଗାରିମାରେ ଯେବେ ଆପଣ ସମାହିତ ହୋଇ ରହୁଛନ୍ତି ତେବେ ତାହା ହିଁ ତ ଧ୍ୟାନର ଉତ୍କୃଷ୍ଟ ବିଧାନ। ତା' ପାଇଁ ସ୍ୱତନ୍ତ୍ର ବିଧାନରେ ଧ୍ୟାନ ନିଷ୍ପ୍ରୟୋଜନ।

୧୮

ଆଶାର ଶାଶ୍ୱତ ବର୍ତ୍ତିକା ଅନ୍ଧକାରମୟ ପଥରେ ଆତ୍ମା ଭ୍ରମଣ କରି ଅବତାରମାନଙ୍କ ସହ ଈଶ୍ୱରଙ୍କ ସମୀପରେ ପହଂଚିଯାଏ । କଦାପି ଆଶାଶୂନ୍ୟ ହୁଅନାହିଁ, ତେବେ ତ ତୁମେ ଅନ୍ଧକାର ପଥରେ ତୁମ ବର୍ତ୍ତିକାର ସଂଧାନ ସଳିତାକୁ ଆଶା ଆଲୋକରେ ଆଲୋକିତ କରି ପୁନଃ ଈଶ୍ୱରାଭିମୁଖୀ ଯାତ୍ରା କରିପାରିବ ।

ଅଧିକାଂଶ ଲୋକେ କିଛିକ୍ଷଣ ପାଇଁ ଚେଷ୍ଟିତ ହୁଅନ୍ତି, କିନ୍ତୁ ବାରମ୍ବାର ଅକୃତକାର୍ଯ୍ୟ ହୁଅନ୍ତି, ସେମାନେ କିଛି ଆଶା ସହିତ ପରେ ଆଶା ଶୂନ୍ୟ ହୋଇଥାନ୍ତି । ଆତ୍ମାନୁସଂଧାନୀ ସାଧକ କେବେ ନିରାଶା ହୁଏ ନାହିଁ; ସେ ଜାଣେ ଯେ ତାହାର ସମସ୍ତ ଆଭ୍ୟନ୍ତର ଶାଶ୍ୱତଦ୍ରଷ୍ଟା ତା'ର ସମସ୍ତ ସ୍ୱପ୍ନକୁ ସାକାର କରିବେ । ସେ ଜାଣେ ଯେ ମୃତ୍ୟୁ ବିସ୍ମୃତିର ଗହ୍ୱରରେ ଶୀତଳ ଶୟନ ନୁହେଁ, କିନ୍ତୁ ଅନନ୍ତ ଯାତ୍ରା ପଥରେ ଏକ କ୍ଷଣିକ ବିଶ୍ରାମ । ସେଥିପାଇଁ ସେ ନବୀନ ଆଶା ସହିତ ପରମପୁରୁଷଙ୍କ ସହ ମିଳିତ ହେବାର ଆଶାରେ ଅଗ୍ରସର ହୋଇଥାଏ ।

ଆତ୍ମାର ସବୁଠାରୁ ବଡ଼ ଅପମାନ ହେଉଛି ତାକୁ ଅନ୍ତିମ ନୈରାଶ୍ୟ ଚେତନା ସହ ସଂଯୁକ୍ତ କରିବା । ଆଶାର ସଂହାର ତଥା ନୈରାଶ୍ୟର ସଂଚାର ହେଉଛି ପାଶବିକ । ତାହା ତୁମର ଦିବ୍ୟ ଏକକ ପରିଚୟକୁ ଲୁଚାଇ ଦେବ । ଈଶ୍ୱରଙ୍କ ସଂତାନ ଭାବେ ଆମେ ସର୍ବଦା ସର୍ବୋଚ୍ଚ ଏବଂ ସର୍ବୋତ୍କୃଷ୍ଟ ପ୍ରତି ଆଶାବାଦୀ ହେବା, ତୁମପାଇଁ ଅନ୍ୟ କିଛି ଉତ୍କୃଷ୍ଟ ହୋଇନପାରେ । ଆଶାର ସଂଚାର ପୂର୍ବକ ସେହି ସମୁଜ୍ଜ୍ୱଳ ଆଲୋକ ପୁଂଜ ଯାହା ପରମାତ୍ମାଙ୍କର ଅବତାର ପଥରେ ଯାତ୍ରା କରି ତାଙ୍କୁ ପ୍ରାପ୍ତ କର ।

୧୯

ଯୋଗ ଆୟୁର୍ବେଦରେ ଆମ ଶରୀରରେ ଗୋଟିଏ ସେଲ୍, ଜିନସ୍, କ୍ରୋମୋଜସ୍‌ରୁ ନେଇ ଏଥିରେ ପ୍ରସ୍ତୁତ ହୋଇଥିବା ଟିସ୍ୟୁ, ଆର୍ଗେନ୍ସ୍ ଏବଂ ପୂରା ସିଷ୍ଟମ୍ ଯାହା ବିଷୟରେ ଅନୁସନ୍ଧାନ କରାଯାଇଛି, ଭଲିଂଟାରୀ ସିଷ୍ଟମ୍ ତଥା ଯାହା ବିଷୟରେ ଆମକୁ ଜଣା ନାହିଁ, ଅଟୋନମସ୍ ସିଷ୍ଟମ୍ ପ୍ରାୟ ୯୯% ଏହା ଆମର ଲିଭର, କିଡ଼୍‌ନୀ, ହାର୍ଟ, ବ୍ରେନ୍‌ରୁ ନର୍ଭସ ସିଷ୍ଟମ୍, ନିଃଶ୍ୱାସ ପ୍ରଭୃତି ଚାଳିତ ହେଉଛି । ସମସ୍ତ କେମିକାଲ, ସଲଟ୍ ଓ ହରମୋନ ସଂତୁଳିତ ହୋଇଥାଏ । ବାତ, ପିତ୍ତ, କଫର

ସଂତୁଳିତ, ସପ୍ତ ଧାତୁର ସଂତୁଳନ, ଅଷ୍ଟ ଚକ୍ର ଗୁଡ଼ିକର ସଂତୁଳନ, ପଂଚ ଭୂତାଗ୍ନି, ଜଠରାଗ୍ନିର ସଂତୁଳନ, ଇନ୍ଦ୍ରିୟ, ମନ, ଆତ୍ମାର ସଂତୁଳନ, ଯାହା ନିଜ ସ୍ୱରୂପରେ ରହିଛି, ଏହାକୁ 'ସ୍ୱାସ୍ଥ୍ୟ' ଶବ୍ଦ ମାଧ୍ୟମରେ ପ୍ରକାଶ କରାଯାଇଛି । ଏହା ପୂର୍ଣ୍ଣ ଶୁଦ୍ଧ ସ୍ୱରୂପରେ ରହିଥିବା ଯୋଗ ଆୟୁର୍ବେଦ ଏବଂ ସାତ୍ତ୍ୱିକ ଜୀବନ ପଦ୍ଧତିରେ ଏହା ସଂଭବ, ଏହା ଅନ୍ୟ କୌଣସି ପଦ୍ଧତିରେ ନଥାଏ ।

ଆମ ଶରୀର ଇନ୍ଦ୍ରିୟ ମନର ଅଧିକାଂଶ ଶକ୍ତି ଗୁପ୍ତ ଅବସ୍ଥାରେ ରହିଥାଏ । ଏହାର ଦିବ୍ୟ ଜାଗରଣ ସହିତ ଭୁଲ ଆହାର, ବିଚାର, ବାଣୀ, ବ୍ୟବହାର ଓ ସ୍ୱଭାବ ଦୋଷର କାରଣ, ବଂଶାନୁଗତ କାରଣ, ବାହ୍ୟ ପ୍ରାକୃତିକ କାରଣରୁ ରିଜେନେଟ୍ ହୋଇ ସେଲସ୍ ରିଜେନେଟ୍ ହୋଇଥାଏ । ଆମ ଶରୀରରେ ଇନ୍ଦ୍ରିୟ, ମନ, ଆତ୍ମା ଏବଂ ସାରା ଜୀବନଚକ୍ର ଅର୍ଡ଼ର ଅର୍ଥାତ୍ ସହଜ ପ୍ରବାହ ହୋଇଥାଏ । ସମସ୍ତ ଡିଜ୍ ଅର୍ଡ଼ର ଦୂର ହୁଏ । ଆମେ ବୈଜ୍ଞାନିକ ବ୍ୟାବହାରିକ ରୂପରେ ସ୍ୱୟଂ ଉପରେ ଏବଂ ପ୍ରୟୋଗାତ୍ମକ ଭାବେ ଏହାକୁ ଉପଲବ୍ଧି କରୁଅଛୁ । ଏହି ଆରୋଗ୍ୟ ବିଜ୍ଞାନ ବହୁ ରହସ୍ୟପୂର୍ଣ୍ଣ ତଥା ଗାମ୍ଭୀର୍ଯ୍ୟମୟ । (ସ୍ୱାମୀ ରାମଦେବ)

୨୦

ଆୟୁର୍ବେଦ ବିନା ଯୋଗ ଅପୂର୍ଣ୍ଣାଂଗ । ଆୟୁର୍ବେଦ ଉପଚାର ସେତେବେଳେ ପୂର୍ଣ୍ଣାଂଗ ହେବ, ଯେବେ ଆପଣ ଯୋଗ କରିବେ । ଯଦିଓ ମେଦ ବହୁଳତା, ଉଚ୍ଚରକ୍ତଚାପ ଏବଂ ପାଚନ ତନ୍ତ୍ରର ରୋଗ ଆଦି କିଛି ବ୍ୟାଧିକୁ ଆପଣ କେବଳ ଯୋଗଦ୍ୱାରା ଦୂରେଇ ରଖିପାରିବେ, ତେବେ ଇନ୍‌ଫିଲିଟ, ଅର୍ଶ, ଆର୍ଥାଇଟିସ୍, ଲିଭର, ସୋରିଆସିସ, ଅନିଦ୍ରା, ଗ୍ୟାସ, କୋଷ୍ଠ କାଠିନ୍ୟ, ଜୀର୍ଣ୍ଣ ଜ୍ୱର, ପ୍ଲେଟ୍‌ଲେଟମ୍ କମ୍ ହେବା, ଡେଙ୍ଗୁ, ଟାଇଫଏଡ୍ ଏବଂ ମାଇଗ୍ରେନ୍ ପେନ୍ ଆଦି ବହୁ ରୋଗ ରହିଛି । ଯାହାକୁ ଆପଣ କେବଳ ଆୟୁର୍ବେଦରେ ମଧ୍ୟ ନିର୍ମୂଳ, କିଓର କରିପାରିବେ ।

ଆରୋଗ୍ୟ ଦର୍ଶନ ପୂର୍ଣ୍ଣ ହେବ ଯେବେ ଆପଣ ସର୍ବାଂଗୀନ ସ୍ୱାସ୍ଥ୍ୟ ପାଇଁ ଯୋଗ, ଆୟୁର୍ବେଦ ଓ ପ୍ରାକୃତିକ ସାତ୍ତ୍ୱିକ ଜୀବନ ପଦ୍ଧତିକୁ ଆପଣେଇ ନେବେ । ଶରୀର ନୀରୋଗ ଏବଂ ସଂତୁଳିତ ସ୍ଫୁର୍ତ୍ତିପ୍ରଦ ମନଟିଏ ପାଇ ପାରିବେ ।

**୨୧**

ସଂସାରରେ ସମସ୍ତ ଉପଲବ୍ଧିର ମୂଳ ଆଧାର ହେଉଛି ଆଧ୍ୟାତ୍ମିକତା । କୌଣସି କ୍ଷେତ୍ରର କେହି ମହାପୁରୁଷ ହୁଅନ୍ତୁ ନା କାହିଁକି, ସବୁର ମୂଳ କେଉଁଠି ନା କେଉଁଠି ଆଧ୍ୟାତ୍ମିକତା ସହ ସଂବଂଧିତ । ଆଧ୍ୟାତ୍ମିକତାର ଅର୍ଥ କୌଣସି ଧାର୍ମିକ କର୍ମକାଣ୍ଡ (ରିଚୁଆଲ) ନୁହେଁ । ବସ୍ତୁତଃ ଆମର ଆତ୍ମା ଉପରକୁ ଉଠିବାର ଉଦ୍ୟମ, ଯଥା- ଅହିଂସା, ସତ୍ୟ, ଇମାନଦାରୀ, ଉତ୍ସାହ, ଅଖଣ୍ଡ, ପ୍ରଚଣ୍ଡ- ପୁରୁଷାର୍ଥ, ମିତ ବ୍ୟୟିତା, ଅପରିଗ୍ରହ, ପବିତ୍ରତା, ସେବା, ତପ, ତ୍ୟାଗ, ପ୍ରସନ୍ନତା, ଉଚ୍ଚ ବିଚାର, ସ୍ୱାଧ୍ୟାୟ, ନିରଭିମାନତା ଅସଂଗତା, ପ୍ରେମ, ଭଗବତ୍ ଶରଣାଗତି ଆଦି ।

ଯାହା ଆମ ଆତ୍ମାର ସହଜ ଗୁଣ, ଏହାର ଅନୁରୂପ ନିଜ ଜୀବନ ଓ ଆଚରଣରେ ଓତଃପ୍ରୋତ । ଏହି ଆଧ୍ୟାତ୍ମିକତା, ଶରୀର ସେବାରେ ଓ ଆତ୍ମାକୁ ସତ୍ୟ ଜ୍ଞାନରେ ସଦା ପ୍ରୟାସ ପୂର୍ବକ ଶୁଦ୍ଧ କରିବାର ପୁରୁଷାର୍ଥ । ଶରୀର ସ୍ୱାସ୍ଥ୍ୟତ ଠିକ୍ ରହିବ କାରଣ ଶରୀର ଆନ୍ତରିକ ସ୍ଥିତିର ପ୍ରତିକ୍ରିୟା (Heard Printout) ଏଥିରେ ଦେଖା ଦେଇଥାଏ । ଯାହା ଭିତରେ ସୂକ୍ଷ୍ମଜଗତ (Soft Copy) ରହିଥାଏ । ସୁତରାଂ ଅଧିକ ପୁରୁଷାର୍ଥ ଆବଶ୍ୟକତା ରହିଛି । (ସ୍ୱାମୀ ରାମଦେବ)

**୨୨**

ମହର୍ଷି ବଶିଷ୍ଠ, ଆତ୍ରେୟ, ଭରଦ୍ୱାଜଙ୍କ ଗୋତ୍ରୀୟ ବୋଲି ତୁମେ ଦାବି କରୁଛ, ଯେଉଁ ଦେଶରେ ରାମ, କୃଷ୍ଣ, ବୁଦ୍ଧ ଏବଂ ଶଙ୍କର ଜନ୍ମ ହୋଇଥିଲେ ସେହି ଦେଶରେ ବାସ କରୁଛ; ତୁମେ ଗଲା କାଲିର ଶିଶୁ, ଯେ କୌଣସି ଜ୍ଞାନ ଲାଭ କରି ନାହିଁ କିମ୍ବା ଯାହାର କୌଣସି ଆଧ୍ୟାତ୍ମିକ ବିବର୍ତ୍ତନ ହୋଇ ନାହିଁ; ତା'ର ଅନୁକରଣ କରୁଛ । ତୁମେ ଜୋତା-ଟୋପି ଖୋଲିଦିଅ ଏବଂ ପରମାତ୍ମାଙ୍କୁ ବିନୟ ହୁଅ, ଯେପରି ତୁମ ନେତ୍ରରୁ ଅଶ୍ରୁଧାର ବୋହିଯିବ । କେତେକ ଦୀକ୍ଷା ଶିକ୍ଷାଲାଭ କରି ଈଶ୍ୱରାନୁଭୂତି ପ୍ରାପ୍ତ ହୋଇଛନ୍ତି, ସେହିମାନଙ୍କୁ ଆଶ୍ରୟ କର । ତାଙ୍କ ପାଦତଳେ ପଡ଼ି ଆଧ୍ୟାତ୍ମିକ ଉପଦେଶ ପ୍ରାପ୍ତ ହୁଅ, ଏହା ହିଁ କେବଳ ମଂଗଳମୟ ପନ୍ଥା । ଏହା ତୁମ ଦୁଃଖ, ମ୍ରିୟମାଣ ସାଂସାର ସାଗରରେ ଭାସମାନ ତରୀକୁ ସୁନିୟନ୍ତ୍ରିତ କରିବ । ଏହା ହିଁ ପ୍ରକୃଷ୍ଟ ପନ୍ଥା ଯାହା ତୁମ ଅଜ୍ଞତା ଅନ୍ଧକାରରୁ ଏବଂ ପାପ ରାଶିରୁ ଉଦ୍ଧାର କରିବ । ଏହିଠାରେ ହିଁ ତୁମର ସମ୍ମାନ, ଭକ୍ତି ଏବଂ ମୁକ୍ତି ।

(ସ୍ୱାମୀ ରାମତୀର୍ଥ)

## ୨୩

ଆମ ଚିଦାକାଶରେ ଅନ୍ୟ କୌଣସି ବିଚାର / ଭାବ ଗ୍ରହଣ କରିବା ପାଇଁ ସ୍ଥାନ ନାହିଁ, ଯେବେ ଆମ ମଧ୍ୟରେ ଅଦ୍ୱୈତ ବ୍ୟତୀତ ଅନ୍ୟ କୌଣସି ଚେତନା ନ ହୋଇଛି । ଆମ ଚତୁଃପାର୍ଶ୍ୱରେ ସହସ୍ର ବସ୍ତୁ ବେଷ୍ଟିତ ହୋଇ ରହିଛନ୍ତି । କିନ୍ତୁ ବସ୍ତୁତଃ ଅଦ୍ୱୈତ ଭିନ୍ନ ଅନ୍ୟ କୌଣସି ବସ୍ତୁ ନାହିଁ । ଆମେ ସେହି ଏକ ସ୍ଥିତିରେ ପହଂଚିବା ପାଇଁ ଚେଷ୍ଟିତ ହେଲେ, ଆମେ ସମସ୍ତ ଦୁଃଖ ଯନ୍ତ୍ରଣାରୁ ମୁକ୍ତ ହୋଇଯିବା । ଆମେ ସର୍ବଦା ଦାରିଦ୍ର୍ୟରୁ, କ୍ଷୁଧାରୁ, ମାନସିକଚାପ ପ୍ରଭୃତିରୁ ମୁକ୍ତ ହେବା ପାଇଁ ଚେଷ୍ଟିତ ହେଉଛୁ, କିନ୍ତୁ ଆମେ ତହିଁରେ ସଫଳ ହେଉ ନାହୁଁ । ଯେବେ ଗୋଟିଏ ସମସ୍ୟା ସମାଧାନ ହେଉଛି, ଅନ୍ୟଟି ଉପସ୍ଥିତ ହେଉଛି । ବ୍ୟାଧି ନିରସନ ପାଇଁ ଆମେ ଔଷଧ ସେବନ କରୁଛୁ, କିନ୍ତୁ ଅନ୍ୟ ଏକ ରୋଗରେ ପୀଡ଼ିତ ହେଉଛୁ । ସୁତରାଂ ଏହି ଔଷଧଗୁଡ଼ିକ ଅସ୍ଥାୟୀ ପ୍ରଭାବ ମାତ୍ର । ଅଦ୍ୱୈତର ଅନୁଭବ କେବଳ ସମସ୍ତ ଦୁଃଖ, ଯନ୍ତ୍ରଣା ପୀଡ଼ାରୁ ମୁକ୍ତ ହେବାର ପ୍ରକୃଷ୍ଟ ମାର୍ଗ ଏବଂ ଅଖଣ୍ଡାନନ୍ଦ ପ୍ରାପ୍ତିର ସ୍ଥିତି ।

## ୨୪

ପ୍ରଭୁଙ୍କର ଭକ୍ତ ସେହି ହେବ, ଯେ କାହାରି ଅନିଷ୍ଟ ଚାହେଁ ନାହିଁ । ଯେ ଉଦ୍ଦେଶ୍ୟ ନଭାବି ଦୟାକରେ ତଥା ସମସ୍ତଙ୍କୁ ଭଲପାଏ । ଯାହାର ହୃଦୟ କ୍ଷମାମୟ, ସଂପୂର୍ଣ୍ଣ ଅହଂକାର ଶୂନ୍ୟ ଏବଂ ସଂକୀର୍ଣ୍ଣତାରୁ ଊର୍ଦ୍ଧ୍ୱରେ । ଯେ ନିଜର ଚିତ୍ତ, ବୁଦ୍ଧିକୁ, କେବଳ ଇଷ୍ଟଙ୍କୁ ହିଁ ସମର୍ପି ଦେଇଛନ୍ତି । ଯେ ସକଳ ଅଭିଳାଷ ଶୂନ୍ୟ, ଭୟ ମୁକ୍ତ, ଯାହାର ଅନୁରାଗ ସଂପୂର୍ଣ୍ଣ ବିଶୁଦ୍ଧ, ଯେ ପକ୍ଷପାତ ଏବଂ ଚତୁରତାରୁ ମୁକ୍ତ । ଯେ ପାର୍ଥିବ ପ୍ରତି ଅନାସକ୍ତ, ଯାହାର କର୍ତ୍ତାପଣର ବିନାଶ ହୋଇଛି ଏବଂ ଯେ ଫଳାକାଂକ୍ଷା ଶୂନ୍ୟ, ଯେ ହର୍ଷ ବିଷାଦରୁ ମୁକ୍ତ, ଯେ ଶତ୍ରୁ ମିତ୍ରଙ୍କୁ ସମଦୃଷ୍ଟିରେ ଦେଖେ, ଶୀତୋଷ୍ଣକୁ ସମ ବିଚାର କରେ, ଅନୁକୂଳ ପ୍ରତିକୂଳ ପ୍ରତି ଉଦାସ ରହେ, ସୁବର୍ଣ୍ଣ ଏବଂ ଟେକା (ମାଟି)କୁ ମଧ୍ୟରେ ପ୍ରଭେଦ ଦେଖେ ନାହିଁ । ଯେ ସମସ୍ତ ପ୍ରାଣୀଙ୍କୁ ଏବଂ ଦ୍ରବ୍ୟକୁ ସମାନ ଦେଖେ, ଭାବନା ସମସ୍ତଙ୍କ ପ୍ରତି ସମାନ ରଖେ । ଯେ ଈଶ୍ୱରୀୟ ବ୍ୟବସ୍ଥାରେ ସଂତୁଷ୍ଟ, ଯାହାର ନିଜ ଶରୀର ତଥା ଭବନ ପ୍ରତି ସ୍ୱତନ୍ତ୍ର ପରିଚୟ ରଖେ ନାହିଁ । ଯାହାର ସ୍ଥିର ମତି ଏବଂ ଯେ ସର୍ବଦା ପରମପୁରୁଷଙ୍କ ସହ ନିଜର ବୋଧକୁ ଦୃଢ଼ ଭାବେ ସ୍ଥିତ କରିଅଛି । ବସ୍ତୁତଃ ସେ ହିଁ ଭକ୍ତ, ସେ ହିଁ ଜୀବନରେ ସକଳ ସାଂସାରିକର୍ମ କରୁଥିଲେ ହେଁ ଜୀବନ ମୁକ୍ତ ।

**୨୫**

ଯାହା କିଛି ତୁମେ ଲାଭ କର ତାହା କେବଳ ପ୍ରେମ ଦ୍ୱାରା ହିଁ ସଂଭବ । ବିଶ୍ୱ ପ୍ରେମକୁ ବିଶ୍ଳେଷଣ କର, ଧାରଣ କର । ହୃଦୟରେ ଅନ୍ୟ କିଛି ଅପେକ୍ଷା ପ୍ରେମକୁ ଅଧିଷ୍ଠିତ କର । ତୁମ ଆଧ୍ୟାତ୍ମିକତା ପଥର ସକଳ ବାଧା ଦୂର କରି ସେ ଦିଗରେ ତୁମ ଗତିକୁ ବେଗଗାମୀ କରାଇବ । ତୁମର ଶତ୍ରୁମାନଙ୍କୁ ମିତ୍ରରେ ପରିଣତ କରିଦେବ । ଈଶ୍ୱରଙ୍କ ମହାନ ଆଶୀର୍ବାଦ ତୁମକୁ ପ୍ରାପ୍ତ କରାଇବ । ତୁମ ମନରେ ଶାନ୍ତି ପ୍ରତିଷ୍ଠିତ କରାଇବା ସହିତ ପ୍ରଚୁର ସଂପଦର ସଂଧାନ ଦେବ । ତୁମକୁ ସର୍ବ ଶୀର୍ଷ ଲକ୍ଷ୍ୟ ମୋକ୍ଷରେ ଉପସ୍ଥିତ କରାଇବ ।

ଏହି ବିଚାର ଆମକୁ ଦିବ୍ୟ ଜନନୀ ଶିକ୍ଷା ଦେଉଛନ୍ତି । ସେ ବିଶ୍ୱ ଜନନୀ । ଧର୍ମାତ୍ମା-ପାପାତ୍ମା, ଧନୀ-ନିର୍ଦ୍ଧନ, ରାଜା-ରଂକ, ସାଧୁ ଏବଂ ପାପୀଷ୍ଠ ସମସ୍ତେ ତାଙ୍କ ସଂତାନ । ତାଙ୍କ ପ୍ରେମ ବେଳେବେଳେ ଲୁପ୍ତ ହେଲାପରି ବୋଧହୁଏ, ବସ୍ତୁତଃ ତାହା କ୍ଷୀଣ ହୋଇଯାଇଥାଏ । ତାଙ୍କ ପ୍ରେମ ରକ୍ଷା କରେ, ଅଶିକ୍ଷତା ଦୂର କରେ, ଅଜ୍ଞତାରୁ ମୁକ୍ତି ଦିଏ, ସମସ୍ତଙ୍କୁ ମୁକ୍ତି ଦିଏ ।

ପ୍ରାଣୀମାନଙ୍କ ପ୍ରତି ହୃଦୟରେ ଅନାସକ୍ତ ପ୍ରେମ ସୃଷ୍ଟି ହେଲେ ବସ୍ତୁତଃ ତୁମେ ପରାଶକ୍ତି ଜନନୀଙ୍କୁ ହୃଦୟ ସିଂହାସନରେ ଅଧିଷ୍ଠିତ କରାଇପାରିବ । ତେବେ ଯାଇ ତୁମେ ଶାନ୍ତି, ସଦିଚ୍ଛା, ସୁଖ, ସଂପଦ, ସଂଗତି ଲାଭ କରିପାରିବ । ତୁମ ସମସ୍ତଙ୍କ ଉପରେ ସେହି କରୁଣାମୟୀ ଜନନୀଙ୍କର ଆଶୀର୍ବାଦ ଝରିପଡୁ । ତୁମେ ସମସ୍ତେ ଏହି ଜନ୍ମରେ ଜୀବନ୍ମୁକ୍ତର ଜ୍ୟୋତି ଲାଭ କର ।(ସ୍ୱାମୀ ଶିବାନନ୍ଦ)

**୨୬**

ତୈତ୍ତିରୀୟ ଉପନିଷଦ୍ (୧/୧୧/୧)ରେ କୁହାଯାଇଛି ।

ସ୍ୱାଧ୍ୟାୟ ପ୍ରବଚନାଭ୍ୟାଂ ନ ପ୍ରମଦି ତବ୍ୟମ୍ ।

ସ୍ୱାଧ୍ୟାୟର ପ୍ରବଚନ (ବେଦ ପଠନ ପାଠନ)ରେ ପ୍ରମାଦ କର ନାହିଁ । ଯଦ୍ୟପି ଏହାର କଥନ ଗୁରୁ ଶିଷ୍ୟଙ୍କ ସଂବଂଧରେ ହୋଇଛି, ତଥାପି ଆମର ଦୈନିକ ଜୀବନରେ ଆଧ୍ୟାତ୍ମିକ ଗ୍ରନ୍ଥ ବିଶେଷ ରୂପେ ବେଦ, ଉପନିଷଦ, ବ୍ରହ୍ମସୂତ୍ର, ପୁରାଣ, ଭାଗବତ, ଗୀତା, ଯୋଗବାଶିଷ୍ଠ, ମହାଭାରତ, ରାମଚରିତ ମାନସ

ପରି ଶ୍ରେଷ୍ଠ ଗ୍ରନ୍ଥର ଅଧ୍ୟୟନ ଅଧ୍ୟାପନ, ପଠନ ପାଠନ, ବିଶେଷ ମହତ୍ତ୍ୱ ରଖେ । ଏ ଗ୍ରନ୍ଥ ଆତ୍ମଦର୍ଶୀ, କ୍ରାନ୍ତିଦର୍ଶୀ ଋଷି, ମହର୍ଷିମାନଙ୍କର ଅନୁଭବର ଭଣ୍ଡାର । ଯହିଁରେ ଅଧ୍ୟାତ୍ମ ସଂପଦ ପରିପୂର୍ଣ୍ଣ ହୋଇଛି । ଏ ଗ୍ରନ୍ଥ ଦେଶ ଓ କାଳାତୀତ ।

ଅନାଦି କାଳରୁ ଅପୌରୁଷେୟ ବେଦ ଆଜି ମଧ୍ୟ ଜ୍ଞାନର ଅକ୍ଷୟ ଭଣ୍ଡାର ଭାବେ ବିଦ୍ୟମାନ । ବେଦ ସମସ୍ତ ଜ୍ଞାନ- ବିଜ୍ଞାନର ଉଦିତ ସୂର୍ଯ୍ୟ । ଆମ ସଭ୍ୟତା, ସଂସ୍କୃତି, ତଥା ଧର୍ମୀୟ ଆଧାରର ଅଚଳ ସ୍ତମ୍ଭ । ବେଦକୁ ଈଶ୍ୱରଙ୍କ ନିଃଶ୍ୱାସ କୁହାଯାଏ । ଯସ୍ୟ ନିଃ ଶ୍ୱସିତଂ ବେଦାଃ (ସାୟଣ) । ବେଦରେ ଜ୍ଞାନ ବିଜ୍ଞାନ ସହିତ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧି ଭୌତିକ ସମସ୍ତ ପକ୍ଷର ପ୍ରତିପାଦନ ହୋଇଅଛି । ବେଦରେ ଧର୍ମ ଅର୍ଥ କାମ ମୋକ୍ଷ ଚାରି ପୁରୁଷାର୍ଥର ସମାବେଶ ହୋଇଛି । ଉପନିଷଦ ଏବଂ ବ୍ରହ୍ମସୂତ୍ର ଭାରତୀୟ ଦର୍ଶନର ଆଧାର । ଭାଗବତ ଏବଂ ଭଗବତ୍ ଗୀତା ଜ୍ଞାନ ଭକ୍ତି କର୍ମ ବିବେଚନାର ଆଧାର । ମହାଭାରତ ପଂଚମ ବେଦ । ଯହିଁରେ ସମସ୍ତ ବେଦର ଜ୍ଞାନର ଭଣ୍ଡାର । ଯୋଗ ବାଶିଷ୍ଠ, ଅଷ୍ଟାବକ୍ରଗୀତା ପ୍ରଭୃତିରେ ଅଦ୍ୱୈତ ବେଦାନ୍ତ ବିଷୟ ପ୍ରତିପାଦିତ । ଏହିପରି ଗ୍ରନ୍ଥର ଅଧ୍ୟୟନ, ଅଧ୍ୟାପନ ପ୍ରତିଦିନ ହେବା ବିଧେୟ ।

ସ୍ୱାଧ୍ୟାୟ ଦ୍ୱାରା ମନରେ ମନନ କରାଯାଏ, ତାହାକୁ ବାଣୀରେ ପ୍ରକାଶ କରାଯାଏ । ଯାହା ବାଣୀରେ ଅଭିଭକ୍ତ ହୁଏ, ତାହାକୁ କାର୍ଯ୍ୟରେ ଆଚରଣରେ କରାଯାଏ । ଏଣୁ ସ୍ୱାଧ୍ୟାୟରେ ବାଣୀର ମାଧୁର୍ଯ୍ୟ ପ୍ରୟୋଜନ ।

ଉପନିଷଦର ଉଦ୍‌ଘୋଷଣ ହେଉଛି 'ସ୍ୱାଧ୍ୟାୟାନ୍ମାପ୍ରମଦଃ' ଅର୍ଥାତ୍ ସ୍ୱାଧ୍ୟାୟରେ ପ୍ରମାଦ ନ କର ।

୨୭

ଅନ୍ୟର ଦୋଷ ଦର୍ଶନ, ପରନିନ୍ଦା ଏବଂ ବରିଷ୍ଠ ସତ୍‌ପୁରୁଷଙ୍କ ଅପମାନ କରିବାର ପ୍ରଧାନ ହେତୁ ହେଉଛି ଅଭିମାନ । ଅଭିମାନର ନୀଳ ଚଷମା ଯାହାର ଆଖିରେ ବଂଧା ହୋଇଛି, ତାକୁ ସମସ୍ତଙ୍କ ଦୋଷ କେବଳ ଦେଖାଯାଏ । ସେ ନିଜକୁ ଏବଂ ଆପଣା ବୁଦ୍ଧିକୁ ସର୍ବଶ୍ରେଷ୍ଠ ମାନିଥାଏ । ସୁତରାଂ ଅନ୍ୟର ନିନ୍ଦା, ତିରସ୍କାର ତଥା ଅପମାନ କରିଥାଏ । ମନୁଷ୍ୟ ଯଦି ନିଜକୁ, ନିଜ ବୁଦ୍ଧିକୁ, ଆପଣାର ଜ୍ଞାନକୁ ଯଥାର୍ଥ ରୂପେ ଦେଖିବ, ତେବେ ସେ ଜାଣିପାରିବ କି ଅନନ୍ତ ଅପାର ଜ୍ଞାନସାଗରରୁ

ଗୋଟିଏ କଣା ମାତ୍ର ବି ତାକୁ ପ୍ରାପ୍ତ ହୋଇ ନାହିଁ । ସେ ସମଗ୍ର ଜୀବନ ଦିନରାତି ପଢ଼ିବା, ଜାଣିବା, ଲେଖିବା ଅଭ୍ୟାସ କଲେ ସୁଦ୍ଧା ଜ୍ଞାନର ଅନ୍ତ ପାଇବା ସଂଭବ ହେବ ନାହିଁ । ତା' ଅପେକ୍ଷା ଜାଣିବା ଲୋକଙ୍କ ସଂଖ୍ୟା ଏତେ ଅଧିକ ଯେ ତାଙ୍କ ଆଗରେ ତୁମର କିଛି ବି ପତ୍ତା ରହିବ ନାହିଁ । କିନ୍ତୁ ସେମାନଙ୍କର ଜ୍ଞାନ ଜନିତ ଅହଂକାର କିଞ୍ଚିତ ମଧ ନାହିଁ । ତାଙ୍କଠାରୁ ଆହୁରି ଅଧିକ ଜାଣିବା ବ୍ୟକ୍ତି ବି ଅଛନ୍ତି । ଯେଉଁପରି ଜ୍ଞାନର ଅଭିମାନ ମିଥ୍ୟା ଓ ମୂର୍ଖତା ପୂର୍ଣ୍ଣ, ସେହିପରି ଧନର ଅଧିକାର ତଥା ଅନ୍ୟାନ୍ୟ ପଦାର୍ଥ ବା ସ୍ଥିତିର ଅଭିମାନ ମଧ ହୋଇଥାଏ । ଅଧିକାର ଏବଂ ଉଚ୍ଚ ସ୍ଥିତି ଆଦିର ମୂଲ୍ୟ କ'ଣ ! ପ୍ରଥମତଃ ଏହା ସ୍ୱଳ୍ପ ଏବଂ ଅପୂର୍ଣ୍ଣ, ଅନ୍ୟର ଯାହାକିଛି ଅଛି ସେ ସମସ୍ତ ଅନିତ୍ୟ । ଆଜି ଅଛି କାଲି ନାହିଁ । ଏହି ଅବସ୍ଥାରେ ତା' ଉପରେ ଗର୍ବ କରିବା, ତାକୁ ନେଇ ନିଜଠାରେ ଶୀର୍ଷର ଆରୋପ କରିବା ଏବଂ ଅନ୍ୟକୁ ହେୟ ବିଚାରିବା ବସ୍ତୁତଃ ଅଜ୍ଞତା ।

୨୮

ଶରୀର ପଂଚଭୂତରେ ସୃଷ୍ଟ । ପୃଥ୍ୱୀ, ଜଳ, ଅଗ୍ନି, ବାୟୁ, ଆକାଶର ସମନ୍ୱୟ । ଶରୀର ଜନ୍ମହୁଏ, ବଢ଼େ, ବଦଳୁଥାଏ, ବିଗିଡ଼ିଯାଏ ଏବଂ ମରିଥାଏ । ଏହା ନାଶବାନ୍ । ଏହି ଶରୀରରେ ଭଗବାନ୍ ଆପଣଙ୍କୁ ତିନିଗୋଟି ବିଶେଷ ଶକ୍ତି ଦେଇଛନ୍ତି, ବଳ, ବିବେକ, ବିଶ୍ୱାସ ଏବଂ ଏହାର ସଦୁପଯୋଗର ସ୍ୱାଧୀନତା ଦେଇଛନ୍ତି । ବଳର ସଦୁପଯୋଗ ହେଉଛି ସେବା । ବିବେକର ସଦୁପଯୋଗ ହେଉଛି ନିତ୍ୟ- ଅନିତ୍ୟ ବିଚାର, ମମତା, କାମନା ଅହଂକାରର ତ୍ୟାଗ । ବିଶ୍ୱାସର ସଦୁପଯୋଗ ହେଉଛି ଭଗବତ୍ ପ୍ରେମ । ସେବା, ତ୍ୟାଗ ଏବଂ ପ୍ରେମରୁ ଆପଣଙ୍କୁ ଶାନ୍ତି, ମୁକ୍ତି, ଭକ୍ତିର ପ୍ରାପ୍ତି ହେବ । ଏଥିପାଇଁ ଏ ଜୀବନର ବିଶେଷ ମହତ୍ତ୍ୱ । ଶରୀରର ମହିମା ନାହିଁ ।

ଶ୍ରୀରାମ ଚରିତ ମାନସରେ ଭଗବାନ ଶ୍ରୀରାମଙ୍କ ବାଣୀ ହେଉଛି-

ଛିତି ଜଳ ପାବକ ଗଗନ ସମୀରା, ପଂଚ ରଚିତ ଅତି ଅଧମ ସରୀରା ।

(୪/୧୧/୪)

ଏହାର ଅର୍ଥ ହେଲା- ପୃଥିବୀ, ଜଳ, ଆକାଶ ଅଗ୍ନି ଓ ବାୟୁ ଏହି ପାଂଚ ତତ୍ତ୍ୱରେ ଏ ଅଧମ ଶରୀର ରଚିତ ।

## ୨୯

ଅନେକ ସମୟରେ ଜୀବନର ଲକ୍ଷ୍ୟ ସଂପର୍କରେ ମନରେ ପ୍ରଶ୍ନ ଆସେ- ଜୀବନର ଲକ୍ଷ୍ୟ କ'ଣ ? ଉତ୍ତରରେ ଆମେ କହିପାରିବା (୧) ଜନ୍ମ- ମୃତ୍ୟୁ ଚକ୍ରରୁ ନିସ୍ତାର ବା ମୁକ୍ତି, (୨) ଈଶ୍ୱର ବା ଚରମ ସତ୍ୟକୁ ଉପଲବ୍ଧି କରିବା । ପୁନଃ ମନକୁ ପ୍ରଶ୍ନ ଆସେ, ସାଧାରଣ ଭାବେ ଜନ୍ମ ହେବା ବୟଃକ୍ରମେ ଯୁବକ ହେବା, ବିବାହ କରିବା, ସଂତାନ ଉତ୍ପାଦନ କରିବା, ବାର୍ଦ୍ଧକ୍ୟ ମାର୍ଗ ଦେଇ ମୃତ୍ୟୁ ଲାଭ କରିବା, ଯାହା ସଚରାଚର ଦେଖାଯାଏ, ତାହା ଜୀବନର ଲକ୍ଷ୍ୟ ହୋଇନପାରେ । ସର୍ବୋପରି ମାନବ ସୃଷ୍ଟିର କିଛି ଉଦ୍ଦେଶ୍ୟ ରହିଛି ।

ସମସ୍ତ ଧର୍ମ, ମତ, ପନ୍ଥ ସମଗ୍ର ମାନବ ସମାଜ ସେହି ଚରମ ସତ୍ୟର ସଂଧାନୀ । ଧର୍ମୀୟ ଗ୍ରନ୍ଥ ବେଦ, ଭଗବତ୍ ଗୀତା, କୋରାନ୍, ବାଇବେଲ, ଗୁରୁଗ୍ରନ୍ଥ ସାହେବ ଆମକୁ ଆନନ୍ଦର ମାର୍ଗ, ତଥା ବସୁଧୈବ କୁଟୁମ୍ବର ଆଲୌକିକ ସରଣୀ ଦର୍ଶାଇଛନ୍ତି । ସଦାଚାରୀ ହେବା ପାଇଁ ସତତ ଉତ୍ପ୍ରେରିତ କରୁଛନ୍ତି । ନୈତିକ ଆଧାରରେ ପ୍ରତିଷ୍ଠିତ ହେବାର ନିର୍ଦ୍ଦେଶ ଦେଇଛନ୍ତି ।

ଏକ ସଂଭାବ୍ୟ ହୋଇପାରେ ଯେ ଏହି ସୃଷ୍ଟି, ଦ୍ରବ୍ୟ ସମୂହଗୁଡ଼ିକ ମନୁଷ୍ୟ ସୃଷ୍ଟ ଏବଂ ଭୟର ଉପାଦାନ । ଶୃଙ୍ଖଳା ସୃଷ୍ଟି କରିବା ଦ୍ୱାରା ସମାଜରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ହୋଇପାରିବ । କେହି କହନ୍ତି ଈଶ୍ୱର କିଛି ନାହିଁ, ତାହା ଅଜ୍ଞତା ଏବଂ ଭୟ । କିନ୍ତୁ ସୃଷ୍ଟିର ସ୍ରଷ୍ଟା କେହି ନିଶ୍ଚୟ ରହିବେ । କେହି ଜଣେ ଚରମ ଶକ୍ତି ସମଗ୍ର ସୃଷ୍ଟିର ଆଦିରେ ରହିଛନ୍ତି । ଏହା ଏକ ହେତୁ ଗତ ଯୁକ୍ତି ଏବଂ ମୂଳବିଶ୍ୱାସ । ସୁତରାଂ ସେହି ଚରମ ସତ୍ୟର ସଂଧାନରେ ବ୍ରତୀ ହେବା ଆମର, ମନୁଷ୍ୟ ଜୀବନର ପରମ ଧ୍ୟେୟ ହେବା ଉଚିତ୍ ।

## ୩୦

ମହତ୍ତ୍ୱାକାଂକ୍ଷା କାରଣରୁ ହିଁ ମନୁଷ୍ୟର ଦୁର୍ବାର କାମନା ଜାତ ହୁଏ ଏବଂ ତା'ର ପୂର୍ତ୍ତି ନିମିତ୍ତ ବ୍ୟକ୍ତିକୁ ଏପରି କିଛି କାର୍ଯ୍ୟ କରିବାକୁ ହୁଏ, ଯାହାର ପରିଣାମ କେବେ କେବେ ପ୍ରତିକୂଳ ହୋଇଯାଏ ।

ବ୍ୟକ୍ତିର ସମୟ ବରାବର ଏକାପରି ଯାଏ ନାହିଁ, କେହିନା କେହି ନିମିତ୍ତ ହୋଇ ଜୀବନରେ ଉପରକୁ ଆସିଯାଏ । ଏପରି ସ୍ଥିତିରେ ବିଚଳିତ ନହୋଇ

ପୂର୍ଣ୍ଣ ଧୈର୍ଯ୍ୟ ଧାରଣ କରିବା ଉଚିତ୍ ।

ଧୀରଜ ଧର୍ମ ମିତ୍ର ଅରୁ ନାରୀ । ଆପଦକାଳ ପରିଖିଅ ହିଁ ଚାରି ।
(ରାମ ଚରିତ ମାନସ- ୩/୫/୭)

ସମ୍ମୁଖକୁ ଆସିଥିବା ପରିସ୍ଥିତିରେ ଧୈର୍ଯ୍ୟ ପୂର୍ବକ ସମ୍ମୁଖୀନ ହେବା ବିଧେୟ । ଭଗବତ୍ ପ୍ରାପ୍ତି ସୁଖ-ଦୁଃଖ, ମାନ-ଅପମାନ, ଶୀତ-ଉଷ୍ଣ, ହାନି-ଲାଭ ପ୍ରତ୍ୟେକ ପରିସ୍ଥିତିରେ ହୋଇପାରେ । ନିଜେ ଏବଂ ନିଜ ପରିବାରର ଜୀବନଯାପନରେ ଯଥା ସଂଭବ କମ୍ ଖର୍ଚ୍ଚରେ କାମ ଚଳାଇବାର ଅଭ୍ୟାସ କରିବା ଉଚିତ୍ । ଅନ୍ୟକୁ ଆର୍ଥିକ ସହାୟତା କରିବାର କ୍ଷମତା ରଖିବା ଉଚିତ୍ । ପରମାତ୍ମା ପ୍ରଭୁ ଅନ୍ତର୍ଯାମୀ । ସେ ବ୍ୟକ୍ତିର ପରିସ୍ଥିତି ଅନୁସାରେ ତା'ର ପବିତ୍ର ଭାବନା ତଥା ସମର୍ପିତ ଭାବ ଆଧାରରେ ତାକୁ ସହାୟତା ଏବଂ କଲ୍ୟାଣ କରିଥାନ୍ତି ।

**୩୧**

କୁଳ ପରଂପରାରେ ଘରେ ଯଦି ବିଷ୍ଣୁ ଅଥବା ଦେବୀଙ୍କର ପୂଜା ହୋଇ ଆସୁଛି, ତେବେ ତାହାର ପାଳନ ହେବା ବିଧେୟ । ପରିବାରର ଅଥବା ବଂଶର ପ୍ରତ୍ୟେକ ବ୍ୟକ୍ତିକୁ ସେହି ପରଂପରାର ସୁରକ୍ଷା କରିବା କର୍ତ୍ତବ୍ୟ । ଏଥି ସହିତ ନିଜ ଶ୍ରଦ୍ଧା-ଭକ୍ତି ଅନୁସାରେ ଯାହାଙ୍କୁ ହୃଦୟ ସିଂହାସନରେ ବସାଇଛନ୍ତି, ସେହି ଶ୍ରୀକୃଷ୍ଣ ଅଥବା ଶ୍ରୀରାମ ଆଦି ଇଷ୍ଟଦେବଙ୍କ ପୂଜା ମଧ୍ୟ କରିପାରିବେ । ଯେଉଁ ବ୍ୟକ୍ତି ପାଇଁ ଶ୍ରୀକୃଷ୍ଣ ଇଷ୍ଟଦେବ ସେ ଶ୍ରୀକୃଷ୍ଣଙ୍କ ପୂଜା ପ୍ରଧାନତଃ କରିବେ । ସେ କେବଳ ଶ୍ରୀକୃଷ୍ଣଙ୍କ ପ୍ରତିମା ଅଥବା ଚିତ୍ରପଟର ପୂଜା କରଣୀୟ । ଶାଳଗ୍ରାମ-ଶିଳାକୁ ମଧ୍ୟ ଶ୍ରୀକୃଷ୍ଣ ଭାବନାରେ ପୂଜନ କରିବାରେ ଆପତ୍ତି ନାହିଁ । ଶ୍ରୀକୃଷ୍ଣଙ୍କର ପାର୍ଷଦ ଅଥବା ଅନ୍ତରଂଗ ଶକ୍ତିର ଭିନ୍ନ ଭିନ୍ନ ତନ୍ତ୍ରରେ ନାନା ପ୍ରକାରରେ ନିର୍ଦ୍ଦେଶ ରହିଛି । ସାଧାରଣ ଭାବେ ଆପଣ ଶ୍ରୀକୃଷ୍ଣଙ୍କ ସହତ ଶ୍ରୀ ରାଧାଙ୍କର ପୂଜନ କରିପାରିବେ ।

ଇଷ୍ଟ ପ୍ରତିମାରେ ବା ଚିତ୍ରପଟରେ ପ୍ରାଣ ପ୍ରତିଷ୍ଠା କରିବା ଉତ୍ତମ, କିନ୍ତୁ ତାଙ୍କ ପୂଜନ ବିଧାନରେ କୌଣସି ପ୍ରକାର ତ୍ରୁଟି ହେବା ଅନୁଚିତ । ତାଙ୍କୁ ବୈଦିକ ବିଧିରେ ସଂସ୍କାର ହେବାପରେ ଅନ୍ୟ ଅସଂସ୍କୃତ ବ୍ୟକ୍ତିଙ୍କଠାରୁ ସୁରକ୍ଷିତ ରଖିବା ପ୍ରୟୋଜନ । ନିୟମ ପୂର୍ବକ ପୂଜନ, ଭୋଗ-ରାଗ ଆଦିର ସୁବନ୍ଦୋବସ୍ତ କରିବା ବିଧେୟ । ଯଦି ଏପରି ବ୍ୟବସ୍ଥା, ବିଧି ନିଷେଧ ହୋଇ ନପାରୁଛି, ତେବେ

ବୈଦିକ ବିଧିରେ ପ୍ରାଣ ପ୍ରତିଷ୍ଠା ନକରି ଭାବନା ଦ୍ୱାରା ଭଗବାନଙ୍କୁ ସର୍ବବ୍ୟାପକ ଦେଖି ପ୍ରେମ ପୂର୍ବକ ପୂଜନ କରିବା ଉଚିତ୍ ।

୩୨

ଆମେ ନିଶ୍ଚିତ ଭାବେ ସଂଥ ମହାପୁରୁଷ ନୋହୁ । ଆପଣ ଯେଣୁ କିଛି ପଚାରୁଛନ୍ତି, ତେବେ ମୋ' ପାଖରେ ତ କିଛି ନାହିଁ, ଯାହା ଦୋଷ ଦୁର୍ଗୁଣ ଅଛି, ତାକୁ ଦେଇ ଆପଣଙ୍କର ହାନି କରିବା ଅନୁଚିତ । ଅତଃ ମୁଁ ସନ୍ଥ ତୁଳସୀ ଦାସଙ୍କ ଏକ ମହାନ୍ ବାଣୀ ଶୁଣାଉଛି । ଯଦି ସରଳ ଏବଂ ଭାବପୂର୍ଣ୍ଣ ହୃଦୟରେ ଭଗବାନଙ୍କୁ ଏପରି ପ୍ରାର୍ଥନା କରାଯାଏ- ତେବେ ଆପଣ, ମୁଁ ଅଥବା ଅନ୍ୟ କେହି କରନ୍ତୁ ତେବେ ଅବଶ୍ୟ ଦୟା ସିନ୍ଧୁ ପତିତପାବନ ପ୍ରଭୁଙ୍କ କୃପା ପ୍ରାପ୍ତ ହେବ । ସେ ଇଚ୍ଛା କଲେ କୌଣସି ମହାପୁରୁଷଙ୍କ ଦର୍ଶନ କରାଇ ଦେବେ ।

କହୁ କେହି କହିୟ କୃପାନିଧି ! ଭବ ଜନିତ ବିପତ୍ତି ଅତି ।
ଇନ୍ଦ୍ରିୟ ସକଳ ବିକଳ ସଦା, ନିଜ ନିଜ ସୁଭାଭ ରତି ॥
ଜେ ସୁଖ- ସଂପତି ସରଗ- ନରକ ସଁଗ ଲାଗି ।
ହରି ! ପରିହରି ସୋଇ ଜନତ କରତ ମନ ମୋର ଅଭାଗୀ ॥
ମେଁ ଅତି ଦୀନ, ଦୟାଲୁ ଦେବ ମୁନି ମନ ଅନୁରାଗେ ।
ଜୋ ନ ଦ୍ରବହୁ ରଘୁବୀର ଧୀର ଦୁଖ କାହେ ନ ଲାଗେ ॥
ଜଦ୍ୟପି ମେଁ ଅପରାଧ ଭବନ, ଦୁଖ- ସମନ ମୁରାରେ ।
ତୁଳସୀ ଦାସ କହଁ ଆସ ଯହେ ବହୁ ପତିତ ଉଧାରେ ॥

ହେ କୃପା ନିଧାନ ! ଏହି ସଂସାର ଜନିତ ଆତ୍ୟନ୍ତିକ ବିପତ୍ତିର କଥା ଆପଣଙ୍କ ଭିନ୍ନ କାହାକୁ ବା ଆଉ ଶୁଣାଇବି ? ଇନ୍ଦ୍ରିୟ ତ ନିଜ ନିଜ ବିଷୟରେ ଆସକ୍ତି ହୋଇ ସଦା ସେଥି ନିମିତ୍ତ ବ୍ୟାକୁଳ । ସେ ତ ନିରନ୍ତର ସୁଖ ସଂପତ୍ତି ଏବଂ ସ୍ୱରଗ ନରକରେ ହିଁ ଭ୍ରମୁ ଅଛି, ହେ ହରି ! ମୋର ଏହି ଅଭାଗା ମନ ମଧ ଆପଣଙ୍କୁ ଛାଡ଼ି ସେହି ଇନ୍ଦ୍ରିୟ ସହ ରହୁଛି । ହେ ଦେବ ! ମୁଁ ଅତ୍ୟନ୍ତ ଦୀନ, ଆପଣଙ୍କ ଦୟାଲୁ ନାମ ଶୁଣି ମନ ଆପଣଙ୍କ ପ୍ରତି ଆସକ୍ତ ହୋଇଛି । ଏହାପରେ ବଧୀର ରଘୁବୀର ! ଯଦି ଆପଣ ମୋ' ଉପରେ ଦ୍ରବିତ ନହେବେ । ତେବେ କେତେ ଦୁଃଖ ନହେବ ? ଅବଶ୍ୟ ମୁଁ ଅପରାଧୀର ଘର । କିନ୍ତୁ ମୁରାରେ ! ଆପଣ

ତ ଅପରାଧର ବିଚାର ନକରି ଦୁଃଖର ବିନାଶକାରୀ । ମୁଁ ତୁଳସୀ ଦାସର ଏହି ଆଶା ରହିଛି, କାରଣ ଆପଣ ମୋ' ପରି ଅନେକ ପତିତଙ୍କର ଉଦ୍ଧାର କରିଅଛନ୍ତି ।

**୩୩**

ମନୁଷ୍ୟ ନିଜକୁ ଏହି ସ୍ତରକୁ ଯିବା ଉଚିତ୍ ଯେ ନିଜ ଦୋଷ ନିଜେ ଦେଖିପାରିବ । ଆତ୍ମ ବିଶ୍ଳେଷଣ କରି ମନକୁ ମନ ନିଜର ନିନ୍ଦା କରୁ ତଥା ଆପଣାକୁ ନିର୍ଦ୍ଦୋଷ କରିବା ସତତ ପ୍ରଯତ୍ନ କରିବା ଉଚିତ୍ । ସବୁଲୋକ ଏପରି କଲେ ତ ସକଳେ ନିର୍ଦ୍ଦୋଷ ହୋଇଯିବେ ତଥା ସମାଜ ଆପେ ଆପେ ସୁଧୁରି ଯିବ । ବ୍ୟକ୍ତିର ସମୁଦାୟ ହେଉଛି ସମାଜ । ସମାଜର ପ୍ରତ୍ୟେକ ବ୍ୟକ୍ତି ନିର୍ଦ୍ଦୋଷ ହୋଇଗଲେ ସମାଜ ଆପେ ନିର୍ଦ୍ଦୋଷ ହୋଇଗଲା । କିନ୍ତୁ ଭ୍ରମ ହେଉଛି ଏଇଠି ଯେ ମନୁଷ୍ୟ ନିଜର ଖରାପ ଦିଗକୁ ଦେଖେ ନାହିଁ, ଦେଖିପାରେ ନାହିଁ ଅଥବା ଦେଖିବାର ସାହସ ସଂଚୟ କରିପାରେ ନାହିଁ । ଅନ୍ୟର ଛୋଟ ଦୋଷକୁ ନିଜର ଚମମାରେ ବଡ଼ ଦେଖିଥାଏ । ଆପଣାର ଦ୍ୱେଷ, ଦମ୍ଭ, ହିଂସା ପ୍ରତିହିଂସା ପୂର୍ଣ୍ଣ ଅନ୍ୟ ହୃଦୟର କଳୁଷକୁ ଦୂର କରିବାକୁ ପ୍ରଯତ୍ନ କରିଥାଏ । ଫଳତଃ ଖରାପ ଆହୁରି ବଢ଼ିଯାଏ, ନିଜର ଓ ଅପରର । ଏହା ଦ୍ୱାରା ଉଭୟ ପକ୍ଷର ହାନି ହୋଇଥାଏ । ସାଧକକୁ ବଡ଼ ସାବଧାନ ସହକାରେ ଏହି ଦୋଷରୁ ଆପଣାକୁ ବଂଚାଇବା ଉଚିତ୍ । ଅନ୍ୟର ଦୋଷ ଦର୍ଶନକାରୀ ଚକ୍ଷୁ ବା ଅବସର ନଥିବା ଦରକାର ।

ତେରେ ଭାବୈ ଜୋ କରୋ ଭଲୋ ବୁରୋ ସଂସାର ।
ନାରାୟଣ ତୁ ବୈଠ କର ଅପନୋ ଭବନ ବୁହାର ॥

**୩୪**

ଗୋଘୃତର ଦେବତା ସୂର୍ଯ୍ୟ । ଗୋ ଘୃତକୁ ଦେବତା, ମହର୍ଷି ତଥା ଆୟୁର୍ବେଦ ବିଜ୍ଞାନୀମାନେ ପବିତ୍ର, ଦିବ୍ୟ ଗୁଣଯୁକ୍ତ, ପରମ ରସାୟନ, ପାପ ଶୁଦ୍ଧିକାରୀ, ଶରୀର ପୋଷକ, ଆୟୁବୃଦ୍ଧିକାରୀ ବୋଲି ସୂଚାଇଛନ୍ତି । ଗୋଘୃତକୁ ଅମୃତ କୁହାଯାଇଛି । ଆଦିତ୍ୟ ରସାୟନ ଭାବେ କଥିତ, ଘୃତରେ ଅଧିକତମ ପ୍ରାଣବାୟୁ ନିର୍ମାଣ କାରକ ରସାୟନ ତତ୍ତ୍ୱ ବିଦ୍ୟମାନ । ନସ୍ୟ ଭାବେ ଦୁଇ ବୁନ୍ଦା ଗ୍ରହଣ କଲେ ସୁନିଦ୍ରା ହୁଏ ।

ଗୋଘୃତର ଗୁଣ ଅନିର୍ବଚନୀୟ, ଏହି ହେତୁ ଯଜ୍ଞ- ଅନୁଷ୍ଠାନ, ଦେବ ପୂଜନ, ମାଂଗଳିକ ଧାର୍ମିକ କାର୍ଯ୍ୟ ଏବଂ ସାୟଂ କାଳୀନ ହବନ ତଥା ପ୍ରଦୀପ ପ୍ରଜ୍ୱଳନ କରିବାରେ ଗାଈ ଘିଅର ପ୍ରୟୋଗ ଶୁଭ ଭାବେ ଗ୍ରହଣୀୟ । ଏହା ବାତାବରଣ ଶୁଦ୍ଧି କରିଥାଏ । ହବନରେ ପ୍ରଦତ୍ତ ଗୋଘୃତର ଆହୁତି ଏବଂ ଜଡ଼ିବୁଟୀ ବନସ୍ପତି ସାମଗ୍ରୀ ତଥା ଅନ୍ନାଦି ଯବ, ତିଳ ବାୟୁ ଦ୍ୱାରା ସୂକ୍ଷ୍ମ ରୂପ ପ୍ରାପ୍ତ ହୋଇ ଦୂଷିତ ବାୟୁକୁ ଦୂର କରି ଶୁଦ୍ଧି କରିଥାଏ । ଯଜ୍ଞର ଏକ ଉଦ୍ଦେଶ୍ୟ ପର୍ଯ୍ୟାବରଣର ଶୁଦ୍ଧି କରିଥାଏ ।

ସକଳ ପ୍ରକାର ପ୍ରାୟଶ୍ଚିତ୍ତରେ, ଧାର୍ମିକ ଅନୁଷ୍ଠାନର କାର୍ଯ୍ୟରେ, ଯଜ୍ଞ କାର୍ଯ୍ୟରେ, ପଂଚଗବ୍ୟ ପ୍ରାଶନ ବିଧାନ ରହିଛି । ଧର୍ମଶାସ୍ତ୍ର ଏବଂ ଆୟୁର୍ବେଦ ଗ୍ରନ୍ଥାଦିରେ ପଂଚଗବ୍ୟ ନିର୍ମାଣ ବିଧି ସେବନ ବିଧାନ ରହିଅଛି ।

ପଂଚଗବ୍ୟ ପ୍ରାଶନ ମନ୍ତ୍ର ଏହିପରି- 'ଯଦ୍ୱ ଗସ୍ଥିଗତଂ ପାପଂ ଦେହେ ତିଷ୍ଠତି ମାମକେ । ପ୍ରାଶନାତ୍ ପଂଚଗବ୍ୟସ୍ୟ ଦହତ୍ୱଂଗ୍ନି ରେବେନ୍ଧନମ୍ ।'

ଗୋମୂତ୍ର, ଗୋମୟ, ଗୋଦୁଗ୍ଧ, ଗୋଦଧି, ଗୋଘୃତର ଏକ ନିଶ୍ଚିତ ଅନୁପାତରେ ପ୍ରସ୍ତୁତ ମିଶ୍ରିତ 'ପଂଚଗବ୍ୟ' କୁହାଯାଏ ।

ଯେପରି ପୃଥ୍ୱୀ, ଜଳ, ଅଗ୍ନି, ବାୟୁ, ଆକାଶ- ପଂଚ ମହାଭୂତ ସୃଷ୍ଟିର ଆଧାର, ସେହିପରି ସ୍ୱାସ୍ଥ୍ୟ, ସୁଖୀ, ବିକାର ଶୂନ୍ୟ ଜୀବନର ଆଧାର ଗୋ ପ୍ରଦତ୍ତ ଏହି ପାଂଚ ଅମୂଲ୍ୟ ଦ୍ରବ୍ୟ ।

୩୫

ଉପନିଷଦ ଘୋଷଣା କରନ୍ତି ଯେ ଅମୃତତ୍ୱକୁ କେବଳ ତ୍ୟାଗ ଦ୍ୱାରା ଅନୁଭବ କରିହେବ । ଏହି ତ୍ୟାଗର ଅର୍ଥ ନୁହେଁ ଯେ ଘର ସଂସାର ଛାଡ଼ିଦେବା, ଆତ୍ମୀୟ ସ୍ୱଜନଙ୍କୁ ତ୍ୟାଗ କରିବା । ଏହାର ଅର୍ଥ ହେଉଛି ସାଂସାରିକ ବସ୍ତୁ, ବିନାଶଶୀଳ, କ୍ଷୟଶୀଳ ନଶ୍ୱର ବସ୍ତୁରୁ ଆକର୍ଷଣ, ମୋହ, ଆକାଂକ୍ଷା ଅଭୀପ୍ସାର ଲୟ ଘଟିବା । ଶାଶ୍ୱତ ନଶ୍ୱର ମଧ୍ୟରେ ପ୍ରଭେଦ ଦୃଢ଼ କରିବା । ତେବେ ମନୁଷ୍ୟ ନିଜ ମଧ୍ୟରେ ଆଧ୍ୟାତ୍ମିକ ବିଚାରକୁ ଆବିଷ୍କାର କରିପାରିବ । ଏଥିପାଇଁ ଜଂଗଲକୁ ଯିବାର ପ୍ରୟୋଜନ ନାହିଁ । ଗୁମ୍ଫାରେ ରହିବାର ଆବଶ୍ୟକତା ନାହିଁ, ଯଦ୍ୱାରା ତୁମେ ତୁମର ଅଧଃସ୍

ପ୍ରକୃତିକୁ ଜୟ କରି ବାସ୍ତବ ସତ୍ୟକୁ ପ୍ରାପ୍ତ କରିପାରିବ । ବସ୍ତୁତଃ ଏକାନ୍ତ ବାସ ଦ୍ୱାରା ତୁମ ଭିତରେ ଥିବା କ୍ରୋଧ, କାମ, ମୋହ ଆଦିକୁ ତଥା ଅନ୍ୟ ଦୁର୍ବଳତା ଉପରେ ବିଜୟ ହାସଲ କରିପାର, କିନ୍ତୁ ତାହା ଦୀର୍ଘ ସ୍ଥାୟୀ ବା ସମୂଳେ ବିନାଶ ହୋଇ ନପାରେ । ଜୀବନ ଯୁଦ୍ଧରେ ସଂସାରରେ ଥାଇ ସେଗୁଡ଼ିକର ପ୍ରଭାବରୁ ମୁକ୍ତ ହେବା । ତାହା ହିଁ ବିଜୟ ଯାହା ନିଜକୁ ଉର୍ଦ୍ଧ୍ୱାୟିତ ସ୍ଥିତିକୁ ଉନ୍ନୀତ କରିବ, ସମର୍ପଣ ସ୍ତରରେ ପହଁଚାଇବ । ବକ୍ଷ୍ୟମାଣ ବିଚାର ତଥା ପ୍ରୟାସ ଲକ୍ଷ୍ୟଣୀୟ-

୧. ଆଧ୍ୟାତ୍ମିକ ଅନୁଭୂତି ଏବଂ ଶୃଂଖଳା (ଧାରା ବାହିକତା) ।

୨. ବିରକ୍ତ ଭାବ ଅନୁଶୀଳନ କରିବା ।

୩. ନିଜ ମଧ୍ୟରେ ଦୃଢ଼ତା ସ୍ଥିତିରେ ଉପନୀତ କରିବା ।

୩୬

ଧନ ପାଇଁ ଗର୍ବିତ ହେବା ଉଚିତ୍ ନୁହେଁ । ତୁମେ ଯଦି ଭାବୁଥାଅ ଯେ ତୁମେ ଧନୀ, କେହି ଜଣେ ତୁମକୁ ଅନ୍ୟ କେହି ବିତ୍ତଶାଳୀ ଥିବାର ସ୍ମରଣ କରାଇ ଦେବ ଏବଂ ସେହି କ୍ରମରେ ଅନ୍ୟ କେହି ମଧ୍ୟ ସ୍ମରଣକୁ ଆସିଯିବେ ଇତ୍ୟାଦି । ସଂଧ୍ୟାର ଗୋଧୂଳି ଅନ୍ଧକାରରେ ଜୁଳୁଜୁଳିଆ ପୋକ ବାହାରକୁ ଆସନ୍ତି ଏବଂ ଭାବନ୍ତି ଆମେ ପୃଥିବୀକୁ ଆଲୋକ ଦେଉଛୁ । କିନ୍ତୁ ସେମାନଙ୍କ ଅଭିମାନ ଆକାଶର ତାରକାମାନଙ୍କ ଉଦୟରେ ଅର୍ନ୍ତହିତ ହୋଇଯାଏ । ତାରକାମାନେ ଭାବନ୍ତି ସେମାନେ ପୃଥିବୀକୁ ଆଲୋକିତ କରୁଅଛନ୍ତି । କିନ୍ତୁ ଚନ୍ଦ୍ରୋଦୟରେ ତାରକାଗଣ ଲାଜରେ ମଳିନ ହୋଇଯାଆନ୍ତି । ଚନ୍ଦ୍ରମା ଭାବନ୍ତି ଯେ ରାତ୍ରି ତାଙ୍କ ଆଲୋକରେ ହାସ୍ୟମୟୀ ହେଉଛି ଏବଂ ସେ ପୃଥିବୀକୁ ଆଲୋକିତ କରୁଛନ୍ତି । ଅତଃପର ପୂର୍ବକାଶ ଅରୁଣ ବର୍ଣ୍ଣ ଧାରଣ କରେ ଏବଂ ସୂର୍ଯ୍ୟ ଉଦୟ ହୁଅନ୍ତି, ଚନ୍ଦ୍ର ନିଷ୍ପ୍ରଭ ହୋଇ ଅଦୃଶ୍ୟ ହୋଇଯାଆନ୍ତି ।

ଯଦି ଧନୀ, ମାନୀ, ଜ୍ଞାନୀ ମାନେ ଏହି କ୍ରମରେ ଭାବନା କରନ୍ତେ, ସେମାନେ ରିକ୍ତ ଅଭିମାନରୁ ମୁକ୍ତ ହୋଇ ଯାଆନ୍ତେ ।

(ରାମକୃଷ୍ଣ ପରମହଂସ)

୩୭

ସାଧାରଣତଃ ଉପନିଷଦ ବେଦର ଅନ୍ତିମ ପର୍ଯ୍ୟାୟର ରଚନା ଏବଂ ଏହା ସଂହିତା, ବ୍ରାହ୍ମଣ, ଆରଣ୍ୟକ ଭେଦରେ ତ୍ରିଧା ବିଭକ୍ତ । ଈଶ ଉପନିଷଦ ପରି ସ୍ୱଳ୍ପ ଉପନିଷଦ ବେଦର ସଂହିତା ପର୍ଯ୍ୟାୟର ଅନ୍ତର୍ଗତ ।

ବସ୍ତୁତଃ ଉପନିଷଦ ଯାହା ବେଦ ସଂପୃକ୍ତ, ବୈଦିକ ବିଦ୍ୱାନମାନଙ୍କ ମତରେ ତା'ର ସଂଖ୍ୟା ଭେଦ । ସେଗୁଡ଼ିକ ହେଲା ଈଶ, କେନ, କଠ, ପ୍ରଶ୍ନ, ମୁଣ୍ଡକ, ମାଣ୍ଡୁକ୍ୟ, ଐତରେୟ, ତୈତରୀୟ, ଛାନ୍ଦୋଗ୍ୟ, ବୃହଦାରଣ୍ୟକ, ମୈତ୍ରରୀ, ଶ୍ୱେତାଶ୍ୱେତର, ନୃସିଂହ ତାପିନୀ ଏବଂ କୌଶିତକୀ ।

ମୁକ୍ତି କୋନିଷଦରେ ପାରଂପାରିକ ଭାବେ ସଂଖ୍ୟା ୧୦୮ରେ ସ୍ଥିରୀକୃତ ହୋଇଛି । କିନ୍ତୁ ୨୦୦ରୁ ଊର୍ଦ୍ଧ୍ୱ ଉପନିଷଦ ପ୍ରକାଶିତ ହୋଇଛି । ଏଗୁଡ଼ିକ ମହାକାବ୍ୟ ଓ ପୁରାଣ କାଳୀନ । କୌତୂହଳର କଥା ଯେ 'ଆଲ୍ଲା ଉପନିଷଦ' ଆଧୁନିକ କାଳରେ ସାଂପ୍ରଦାୟିକ ସଦ୍‌ଭାବ ସୃଷ୍ଟି ପାଇଁ ରଚିତ ହୋଇଥିଲା । ଏହିପରି ଅଳ୍ପ କେତେକକୁ ବାଦ୍ ଦେଲେ ଅପର ଉପନିଷଦଗୁଡ଼ିକୁ ଛ' ଭାଗରେ ବିଭାଜିତ କରିପାରିବା । ସାମାନ୍ୟ ବେଦାନ୍ତ, ସନ୍ନ୍ୟାସ, ଯୋଗ, ବୈଷ୍ଣବ, ଶୈବ, ଶାକ୍ତ ଉପନିଷଦ । ଅଳ୍ପ କେତେକ ଗୋଟିଏ କିମ୍ବା ଦୁଇଟି ପର୍ଯ୍ୟାୟଭୁକ୍ତ ହୋଇପାରନ୍ତି । ଏଗୁଡ଼ିକ ସେମାନଙ୍କର ମୌଳିକ ମୂଲ୍ୟ ଆଗ୍ରହୀମାନଙ୍କୁ ସତ୍ୟର ସଂଧାନ କରାଇଥାନ୍ତି ।

ପାଶ୍ଚାତ୍ୟ ବିଦ୍ୱାନମାନଙ୍କର ବୈଦିକ ଓ ଅଣବୈଦିକ ଭେଦରେ ବିଭାଜନ ଭାରତୀୟ ଦର୍ଶନର ଅଧ୍ୟୟନକୁ ସୈଦ୍ଧାନ୍ତିକ ଅବଦାନ ।

୩୮

ଚୈତନ୍ୟ, ମନ, ବୁଦ୍ଧି ଏବଂ ଅହଂକାର ଶକ୍ତି, ସାମର୍ଥ୍ୟ, ସୌଭାଗ୍ୟ କ୍ଷେତ୍ର ଏବଂ କ୍ଷେତ୍ରଜ୍ଞ (କ୍ଷେତ୍ରର ଜ୍ଞାତା)ଏ ସମସ୍ତଙ୍କୁ ବାସୁଦେବ ବୋଲି କୁହାଯାଇଛି (ଶ୍ରୀକୃଷ୍ଣ) ।

ସକଳ ଶାସ୍ତ୍ର ଆଚାର ଗୁରୁତ୍ୱ ଉପରେ ଆଶ୍ରିତ । ଧର୍ମ ଆଚାରର ଅନୁସରଣ କରେ ଏବଂ ପ୍ରଭୁ ବା ଧର୍ମର ଈଶ ହେଉଛନ୍ତି ଅଚ୍ୟୁତ (ଶ୍ରୀକୃଷ୍ଣ) ସ୍ୱୟଂ । ଋଷି ଏବଂ ପିତୃ, ଦେବତା, ମୌଳିକ ଉପାଦାନ, ସ୍ଥୂଳତଃ ସେ ହେଉଛନ୍ତି ମୂଳ, ସମଗ୍ର ଚଳମାନ ଏବଂ ଅଚଳ ସୃଷ୍ଟି ନାରାୟଣଙ୍କଠାରୁ ସଂଭୂତ ।

ଯୋଗ, ଜ୍ଞାନ ଏବଂ ସଂଖ୍ୟାର ଜ୍ଞାନ ପ୍ରଭୃତି, କଳା, ବେଦ, ଶାସ୍ତ୍ର ଏବଂ ବୋଧ ଏ ସମସ୍ତ ଜନାର୍ଦ୍ଦନଙ୍କଠାରୁ ପ୍ରସରି ଆସିଛି । କେବଳ ବିଷ୍ଣୁ ଏକମାତ୍ର ମହାନ । ସେହି ପରମାତ୍ମା, ସକଳ ଭୂତଙ୍କ ଆତ୍ମା ଏବଂ ସମଗ୍ର ବିଶ୍ୱର, ତ୍ରିଭୁବନର ଭୋକ୍ତା ସକଳଠାରେ ପରିବ୍ୟାପ୍ତ; ବିବିଧ ବସ୍ତୁରେ ନାନା ଭାବରେ ସମୀଭୂତ ।

(ବିଷ୍ଣୁ ସହସ୍ରନାମ)

୩୯

ଈଶ୍ୱରଙ୍କ ନିକଟବର୍ତ୍ତୀ ହେବା ପାଇଁ ପାର୍ଥିବ ବସ୍ତୁ ଭିକ୍ଷାସୀ ଭାବେ ନମାଗି ସ୍ନେହାସ୍ପଦ ଦିବ୍ୟ ପୁତ୍ର ତୁଲ୍ୟ ମାଗ । ଭକ୍ତ ଜାଣେ ଯେ, ଯାହା ତାଙ୍କ ପିତାଙ୍କ ରହିଛି, ପୁତ୍ରର ତହିଁରେ ଅଧିକାର ।

ଈଶ୍ୱରଙ୍କୁ ଗଭୀର ଭାବେ ଭଲପାଉଥିବା ଭକ୍ତଟି ଜାଣେ ଯେ ସେ ତା'ର ପ୍ରେମମୟ ପିତା । ସେ କେବେହେଲେ ତା'ର ପ୍ରୟୋଜନ ପାଇଁ ମାଗେ ନାହିଁ । ତାଙ୍କୁ ନ ମାଗିଲେ ମଧ୍ୟ ସେ ଅନ୍ତର୍ଯାମୀ ହୋଇଥିବା କାରଣରୁ ସେ ତା'ର ସମସ୍ତ ଅଭାବ ପୂରଣ କରିଥାନ୍ତି । ଈଶ୍ୱର କେବେ ହେଲେ ତାଙ୍କ ସନ୍ତାନମାନଙ୍କୁ ଭିକାରୀ ପରି ମାଗିବା ଇଚ୍ଛା କରନ୍ତି ନାହିଁ । ଭିକାରୀର ପ୍ରାର୍ଥନା ତାଙ୍କ ଅପରିସୀମ ଆଲୋକିତ ସାମ୍ରାଜ୍ୟ ସଂବଂଧରେ ସଂଶୟ ପ୍ରକଟ କରିଥାଏ ।

ଭକ୍ତ କେବଳ ଚେତନ ଦ୍ୱାରା ପରମ ପିତାଙ୍କ ନକଟବର୍ତ୍ତୀ ହୋଇପାରେ । ଯଦି ତାଙ୍କ ସଂତାନଗଣ ନିଜକୁ ପରିପୂର୍ଣ୍ଣ ଅନୁଭବ, ସମର୍ପଣ ଏବଂ ଅଖଣ୍ଡ ଆତ୍ମୀୟତା ହୋଇପାରିଲେ, ତୁମକୁ ଇପ୍‌ସିତ ବରଦାନ କରିବାକୁ ପ୍ରସ୍ତୁତ ହୋଇ ରହିଛନ୍ତି ।

(ପରମହଂସ ଯୋଗାନନ୍ଦ)

୪୦

ସମଗ୍ର ଉପନିଷଦରେ ଦୁଇଗୋଟି ବିଚାର, ଉପନିବଦ୍ଧ ବ୍ରହ୍ମ ଏବଂ ଆତ୍ମା । ଉପନିଷଦର ଦର୍ଶନରେ ଏହି ଦୁଇଗୋଟି ତତ୍ତ୍ୱ ଏକତ୍ୱ ହୋଇଛି । ଡିଉସେନ୍ ଉପନିଷଦର ମୌଳିକ ଚିନ୍ତନ ସମ୍ବନ୍ଧରେ କହିଛନ୍ତି- ବ୍ରହ୍ମ ସେହି ଶକ୍ତି ଯାହା ପ୍ରକାଶମାନ ସକଳ ବସ୍ତୁରେ ବିଦ୍ୟମାନ । ଯେ ସୃଷ୍ଟି, ସ୍ଥିତି, ରକ୍ଷଣ ଏବଂ ପୁନଃ ଉଦ୍‌ଭବ ସ୍ଥଳ, ଅର୍ଥାତ୍ ଅଦୃଶ୍ୟ ସ୍ଥିତିକୁ ଘେନି ଯାଆନ୍ତି । ଏହି ବାହ୍ୟ ସ୍ଥିତ ଅପରିସୀମ ଐଶ୍ୱରୀକ ଶକ୍ତିକୁ ଆତ୍ମା ସହ ଏକତ୍ୱ ବୋଲି ନିର୍ଦ୍ଦେଶିତ । ଦୃଶ୍ୟମାନ କିମ୍ବା ବାହ୍ୟ

ସକଳ ବସ୍ତୁକୁ ଗୋଟି ଗୋଟିକରି ବାହାର କରିଦେଲେ, ଆମେ ସେହି ଅତ୍ୟନ୍ତ ବାସ୍ତବ ତତ୍ତ୍ୱକୁ ଆବିଷ୍କାର କରିପାରିବା, ଆମର ବ୍ୟକ୍ତିଗତ ସ୍ୱୟଂ ଆତ୍ମା ।

ଉପନିଷଦର ଉପଦେଶ ଆମକୁ ଜୀବ ପରମର ଏକତ୍ୱ ନିରାପଦ ଅନୁଭୂତି ସ୍ଥିତିକୁ ଘେନିଯିବ । ଶଙ୍କରଙ୍କ ସୂତ୍ର ଭାଷ୍ୟର ଅନ୍ତିମ ଅର୍ଥ ହିଁ ତାହା । 'ଅନୁଭାବାବସାନଞ୍ଚ ବ୍ରହ୍ମଜ୍ଞାନମ୍ ।' ଶ୍ରବଣ ଏବଂ ମନନର ଲକ୍ଷ୍ୟ ହେଉଛି, ପରିଣାମ ହେଉଛି ଆତ୍ମାନୁଭୂତି ।

ସୁତରାଂ ଜୀବ ଏକାକୀ ମୁକ୍ତି ବା ମୋକ୍ଷ ପ୍ରାପ୍ତି ନିମନ୍ତେ ଅଗ୍ରସର ହୋଇପାରିବ । କର୍ମ ଏବଂ ଭକ୍ତି ହେଉଛନ୍ତି ସହାୟକ କିନ୍ତୁ ଗୁରୁତ୍ୱପୂର୍ଣ୍ଣ ସାର ହେଉଛି ଆତ୍ମାନୁଭୂତି । ଏହିଠାରେ ଏବଂ ବର୍ତ୍ତମାନ ଆମକୁ ଜୀବନ ମୁକ୍ତି ଦିଗକୁ ଅଗ୍ରଗାମୀ କରାଇଥାଏ । ଉପନିଷଦ ଶିବ ଏବଂ ବିଷ୍ଣୁଙ୍କୁ ଏକ ଭାବେ ସ୍ଥିର କରିଛି, ଏବଂ ତାହା ସେହି ପରମପୁରୁଷଙ୍କର ଦୁଇଗୋଟି ନାମ ମାତ୍ର । ବ୍ୟବହାରିକ ଦୃଷ୍ଟିରୁ କଳ୍ପନା ନହୋଇ ସତ୍ୟ ଭାବେ ପ୍ରତିପନ୍ନ ହୋଇଥାଏ । କିନ୍ତୁ ପରମାର୍ଥିକ ଦୃଷ୍ଟିରୁ ନୁହେଁ । ସମଗ୍ର ଦୃଶ୍ୟମାନ ବିଶ୍ୱ ଏକ ଅଂଶ ମାତ୍ର । ବ୍ରହ୍ମ ଈଶ୍ୱର ଭାବେ ପ୍ରତିଭାତ । ବିଶ୍ୱ ସତ୍ୟ ପ୍ରାୟ ଦୃଶ୍ୟ, ଅନୁଭବ୍ୟ । ଜୀବାତ୍ମା ବ୍ରହ୍ମଙ୍କର ରହସ୍ୟମୟ ଶକ୍ତି, ଫଳରେ ନିଜର ଦୈବୀ ସ୍ୱରୂପକୁ ଜାଣିପାରୁ ନାହିଁ ।

**୪୧**

ସତ୍‌ସଂଗ (ସତ୍+ସଂଗ) ସତ୍ ପରମାତ୍ମାଙ୍କ ଗୁଣ, କାରଣ ସେ ସତ୍ ଯାହା ତ୍ରିକାଳ ବାଧିତ । ସେହି ସତ୍‌ଙ୍କ ସହ ଏକତ୍ୱ ହେବାର ବିଧାନ ହେଉଛି ସତ୍‌ସଂଗ । ସତ୍‌ସଂଗ ଚାରି ପ୍ରକାର । ୧. ପରମାତ୍ମାଙ୍କ ଠାରେ ପ୍ରେମ କରିବା ଏହା ହିଁ ସର୍ବଶ୍ରେଷ୍ଠ ସତ୍‌ସଂଗ ।

ତାତ ସ୍ୱର୍ଗ ଅପବର୍ଗ ସୁଖ ଧରିଅ ତୁଲା ଏକ ଅଂଗ ।
ତୂଲ ନ ତାହି ସକଲ ମିଳି ଜୋ ସୁଖ ଲବ ସତସଂଗ ॥

ହେ ତାତା ! ସ୍ୱର୍ଗ ଓ ମୁକ୍ତିର ସୁଖକୁ ତରାଜୁର ଗୋଟିଏ ପାଲାରେ ରଖାଯାଏ ଏବଂ ଅନ୍ୟ ପାଲରେ କ୍ଷଣମାତ୍ର ସତ୍‌ସଂଗକୁ ରଖାଗଲେ ମଧ୍ୟ ଏକ କ୍ଷଣ ସତ୍‌ସଂଗର ସୁଖ ତୁଲ୍ୟ ସେହି ଦୁଇ ସୁଖ ମିଶି ମଧ୍ୟ ସମାନ ହେବେ ନାହିଁ ।

୨. ଭଗବାନଙ୍କ ପ୍ରେମୀଭକ୍ତ ସତ୍‌ସ୍ୱରୂପ ପରମାତ୍ମାଙ୍କୁ ପ୍ରାପ୍ତ ହୋଇ ସଂସାରରେ ଜୀବିତ ଥିଲେ ମଧ୍ୟ ଜୀବନମୁକ୍ତ, ତାଙ୍କ ସଂଗ ଲାଭ କରିବା ।

୩. ଉଚ୍ଚକୋଟୀର ସାଧକଙ୍କ ସଂଗ ଲାଭ କରିବା । ଯେ ପରମାତ୍ମାଙ୍କ ପ୍ରାପ୍ତି ନିମିତ୍ତ ସତତ ପ୍ରଯତ୍ନ କରୁଅଛନ୍ତି । ତାଙ୍କଠାରୁ ଇପ୍‌ସିତ ସାଧକ ସାଧନା ମାର୍ଗର ଅନୁଭୂତି ଦ୍ୱାରା ଉତ୍‌ପ୍ରେରିତ ହେବାର ଖୁବ୍ ସଂଭବନା ରହିଛି ।

୪. ସତ୍‌ଶାସ୍ତ୍ରର ଅଧ୍ୟୟନ, ସ୍ୱାଧ୍ୟାୟକୁ ହିଁ କୁହାଯାଇଛି । ଯେଉଁଥିରେ ଭକ୍ତି, ଜ୍ଞାନ, ବୈରାଗ୍ୟ ଓ ସଦାଚାରର ଚର୍ଚ୍ଚା ହୋଇଥିବ । ଏହି ଧରଣର ଶାସ୍ତ୍ରକୁ ଶ୍ରଦ୍ଧାର ସହ ପଠନ, ମନନ, ଅନୁଶୀଳନ କରିବା ଦ୍ୱାରା ସତ୍‌ସଂଗର ଲାଭ ପ୍ରାପ୍ତ ହୋଇଥାଏ ।

ଏଥିମଧ୍ୟରୁ ପ୍ରଥମ ଧରଣର ସତ୍‌ସଂଗ ସର୍ବୋତ୍ତମ ଏବଂ ତାହା ଭଗବତ୍ କୃପାରେ ପ୍ରାପ୍ତ ହୋଇଥାଏ । ଏହା ସର୍ବ ସୁଲଭ ନୁହେଁ । ପୂର୍ବ ଜନ୍ମର ସାଧନା ଦ୍ୱାରା ହିଁ ଏହା ସୁଲଭ ହୁଏ ।

ପୁଣ୍ୟ ପୁଂଜ ବିନୁ ମିଲ ହିଂ ସଂତା । ସତ ସଂଗତି ସଂସ୍କୃତି କର ଅନ୍ତା ॥

ଏହି ପ୍ରକାର ସତ୍‌ସଂଗ ଫଳ ସଂସାର ଆବାଗମ ଚକ୍ରରୁ ମୁକ୍ତି ଦେଇଥାଏ । ଅପର ସତ୍‌ସଂଗ ଦ୍ୱାରା ଆଲୋକିତ ଦିଗକୁ ଯାତ୍ରା । ଯାହା ଦ୍ୱାରା ମାନବ ଜୀବନର ମହତ୍ତର ଦିଗକୁ ଯାତ୍ରା ଅନୁକୂଳ କରିଥାଏ । ଈଶ୍ୱରୀୟ କୃପା ତଥା ପୂର୍ବ ସୁକୃତ ମଧ୍ୟ ସର୍ବତ୍ର ନିହିତ ।

୪୨

ଗୋମୂତ୍ର ଚରପରା, କଟୁ, ତୀକ୍ଷ୍ଣ, କ୍ଷାର, ହାଲ୍‌କା, ଅଗ୍ନିଦୀପକ, ବୁଦ୍ଧି ବର୍ଦ୍ଧକ, ପିତ୍ତକାରକ ଏବଂ କଫ, ବାତ, ଶୂଳ, ଗୁଲ୍‌ମ, ଉଦରରୋଗ, କଣ୍ଡୁ, ନେତ୍ରରୋଗ, ମୁଖରୋଗ, କାଶ, ଶ୍ୱାସ, ଫୁଲା, କାମଳ ତଥା ପାଣ୍ଡୁରୋଗ ନାଶକ । କାନରେ ପ୍ରୟୋଗ ଦ୍ୱାରା କର୍ଣ୍ଣ ଶୂଳାଦି ନିବାରିତ ହୁଏ । ଗୋମୂତ୍ର ସେବନ ଦ୍ୱାରା କଣ୍ଡୁ, କୁଷ୍ଠ, ଶୂଳ (ଦରଜ) ମୁଖରୋଗ, ନେତ୍ର ରୋଗ, କାଶ, ଗଳିତକୁଷ୍ଠ, ଉଦରରୋଗ, କୃମି, ପାଣ୍ଡୁରୋଗ ନଷ୍ଟ ହୋଇଥାଏ ।

ଗୋମୂତ୍ରର ଦେବତା ବରୁଣ । ଗୋମୂତ୍ର ପରମ ରସାୟନ । ପଥ୍ୟ, ହୃଦୟ ଆନନ୍ଦ ପ୍ରଦାନକାରୀ, ବଳ, ବୁଦ୍ଧି ବର୍ଦ୍ଧନକାରୀ, ଦୀର୍ଘ- ଆୟୁ ପ୍ରଦାନକାରୀ,

ରକ୍ତ ଶୋଧକ, ହୃଦୟରୋଗ ଓ ବିଷ ପ୍ରଭାବ ଦୂରକାରୀ । ସତ୍ତ୍ୱଗୁଣ ଯୁକ୍ତ ହେବା କାରଣରୁ ବିଚାରରେ ସାତ୍ତ୍ୱିକତା ଆଣିଥାଏ ଏବଂ ରଜୋଗୁଣ- ତମୋଗୁଣର ବିନାଶ ହୋଇଥାଏ । ଏହି ମୂତ୍ର ଝାଳ ଏବଂ ମଳ ଦ୍ୱାରା ବିଜାତୀୟ ଦ୍ରବ୍ୟ ମଳକୁ ବାହାରକୁ ବାହାର କରିଦିଏ ।

ଆୟୁର୍ବେଦ ଅନୁସାରେ ଏଥିରେ ପାଂଚଟି ରସ ଯଥା କଟୁ, ତିକ୍ତ, କଷାୟ, ମଧୁର ଓ ଲବଣ ରହିଛି । ଏହା ରୋଗାଣୁ ନାଶକ ସଂକ୍ରମଣ ନାଶକ ଏବଂ ବିଷ ନିବାରକ । ଗୋମୂତ୍ରକୁ ଗଂଗାତୁଲ୍ୟ ପବିତ୍ର କୁହାଯାଇଛି ।

୪୩

ଭକ୍ତ ପାଇଁ ଭଗବାନ ସର୍ବଦା ସର୍ବତ୍ର କୃପା କରିବାର ଦେଖାଯାଏ । ଭକ୍ତ ଏବଂ ଅଭକ୍ତ (ଜଣାଯାଉଥିବା) ଦୁହିଁଙ୍କ ଉପରେ ପ୍ରଭୁ କୃପା କରିଥାନ୍ତି । ଭକ୍ତଙ୍କୁ ପ୍ରେମ କରି ଅଭକ୍ତ (ଦ୍ୱେଷକାରୀ)କୁ ମୁକ୍ତି ଦେଇ ପ୍ରଭୁ ମୁକ୍ତି ପ୍ରଦାନ କରିଥାନ୍ତି । ପତିବ୍ରତାର ମନ ପତିଙ୍କ ଦିଗରେ, କୃପଣର ମନ ଧନ ଦିଗରେ, ବିଷୟୀର ମନ ବିଷୟ ଦିଗରେ ଯେପରି ଲାଗିଥାଏ, ସେହିପରି ଭକ୍ତର ମନ ଭଗବାନଙ୍କ ଦିଗରେ ଲାଗିଥାଏ । ଏହିପରି ମନକୁ ସତତ ଯୁକ୍ତ କରିବା ଦ୍ୱାରା କୃପାର ପ୍ରତ୍ୟକ୍ଷ ଦର୍ଶନ ହୁଏ । ଜଟାୟୁ ଉପରେ କୃପା କରିବା ସମୟରେ ଭଗବାନ୍ କହିଲେ, ଲକ୍ଷ୍ମଣ ! ଶରଣାଗତ ରକ୍ଷକ, ଧର୍ମପରାୟଣ, ଶୂରବୀର ସର୍ବତ୍ର ମିଳିଥାନ୍ତି । ଏପରିକି ପଶୁପକ୍ଷୀ ଯୋନିରେ ମଧ୍ୟ ପ୍ରାପ୍ତ ହୁଅନ୍ତି । ଦେଖ ! ଜଟାୟୁ ମହାନ୍ ଭକ୍ତ ଏବଂ ଧର୍ମାତ୍ମା, ତାତ୍ପର୍ଯ୍ୟ ହେଉଛି କି ଭକ୍ତ ସର୍ବତ୍ର ସୁଲଭ ।

୪୪

କୃପାମୟ ପ୍ରଭୁଙ୍କ କୃପା ନିରନ୍ତର ବୃଷ୍ଟି ହୋଇଯାଉଛି, କିନ୍ତୁ ଆମେ ସମ୍ୟକ ଭାବେ ତାହାକୁ ଅନୁଭବ କରିପାରୁ ନାହୁଁ । ସମସ୍ତ ଅନର୍ଥର ମୂଳକାରଣ ହେଉଛି ଅହଂକାର । ତାହା ହିଁ ଜ୍ଞାନ ଭକ୍ତି ଲାଭର ବାଧକ । ପ୍ରଭୁ କୃପା କରିବା ଦ୍ୱାରା ତାହାର ବିନାଶ ହୁଏ । ସେହି ସମୟରେ ଆମ ପରି ଅଜ୍ଞାନ ଜୀବ କାଳ-କର୍ମ ଈଶ୍ୱରଙ୍କର ମଧ୍ୟ ଦୋଷ ଦେବାରେ ଲାଗିଥାଉ । ଯେ କୃପାଶ୍ରୟୀ ବ୍ୟକ୍ତି, ସେହିମାନେ ହିଁ ଅନୁଭବ କରନ୍ତି କି, ଆମକୁ ଯେଉଁ କଷ୍ଟ ମିଳୁଛି, ଏହା ତ ଅହଂକାର ଶମନର ବିଧାନ ମାତ୍ର । କମାର ଯେପରି ଲୌହ ଖଣ୍ଡକୁ ବ୍ୟବହାର ଉପଯୋଗୀ ଯନ୍ତ୍ରଟିଏ

କରିବା ପାଇଁ ଉତ୍ତପ୍ତ କରି ବାରମ୍ବାର ପ୍ରହାର କରିଚାଲେ ଉଦ୍ଦିଷ୍ଟ ଯନ୍ତ୍ର ଉପକରଣ ହୋଇଗଲେ ଆଉ ଆଘାତ ନଥାଏ । ଅନେକ ଦିନରୁ କଳଙ୍କି ଲଗା ବ୍ୟବହାର ଅନୁପଯୋଗୀ ବର୍ତ୍ତମାନର ଉପଯୋଗୀ ହୋଇଗଲା, ଅତଏବ ଆଉ ପ୍ରହାର, ଆଘାତ ଦେବାର କି ପ୍ରୟୋଜନ ? ଭଗବାନ ଯାହା କରିଥାନ୍ତି, ତଦ୍ୱାରା ଭକ୍ତର କଲ୍ୟାଣ ହିଁ ହୋଇଥାଏ ।

୪୫

ରାମ କହିଲେ ତୁମେ "ଆଧ୍ୟାତ୍ମିକ ଶକ୍ତି ଉପରେ ସର୍ବଦା ବିଶ୍ୱାସ କର । ଯିଏ ତୁମ ସମ୍ମୁଖକୁ ଆସୁଛନ୍ତି ତାଙ୍କୁ ଅସୀମ ଶକ୍ତି ବୋଲି ଗ୍ରହଣ କର । ବିଚାର ତ୍ୟାଗକର, ନିର୍ଦ୍ଦିଷ୍ଟ ମନ୍ତବ୍ୟ ଦିଅନା, ନିନ୍ଦା କରନା ।

ଯଦି ତୁମ ଆଗକୁ କେହି ଜଣେ ଅପରାଧି ବା ଦୁର୍ବୃତ୍ତ ଆସିଗଲା, ତାକୁ ପୂର୍ବଧାରଣା, ଘୃଣା ବା ଶତ୍ରୁ ଭାବରେ ଦେଖ ନାହିଁ । ତାକୁ ଅସୀମ ଶକ୍ତିଙ୍କର ଶକ୍ତି ବା ଦେବତା ଭାବେ ଗ୍ରହଣ କର । ଭୁଲି ଯାଅ ନାହିଁ ସେହି ଆଜିର ସ୍ଖଳିତ ବ୍ୟକ୍ତି ଆସନ୍ତା କାଲି ଜଣେ ପ୍ରଚଣ୍ଡବୀର ବା ମହାନ୍ ସନ୍ନ୍ୟାସୀ ଭାବରେ ଉଭା ହେବେ । ଚରିତ୍ର ସ୍ଥିର ନୁହେଁ । ଅସୀମ ଆତ୍ମାର ସଂଭାବନା ଏବଂ ଶକ୍ତି ଉପରେ ବିଶ୍ୱାସ କର ।

ତୁମ ସାମ୍ନାକୁ ଯିଏ ଆସୁନା କାହିଁକି ତାକୁ ଈଶ୍ୱର ଭାବେ ଗ୍ରହଣ କର, ସେହି ସମୟରେ ନିଜକୁ ଦେଖ ନାହିଁ । ଯଦି ତୁମେ ଆଜି ଜେଲ୍‌ରେ ଅଛ ଆସନ୍ତା କାଲି ତୁମେ ସମ୍ମାନିତ ହେବ ।

ବେଦାନ୍ତ ତୁମକୁ କହେ ବାସ୍ତବ ଆଧ୍ୟାତ୍ମରେ ବିଶ୍ୱାସ କର । ବାସ୍ତବ ଦୈବୀ ଗୁଣରେ ବିଶ୍ୱାସ କର ଯେ, ଈଶ୍ୱର ତୁମ ମଧ୍ୟରେ ଅଛନ୍ତି । ତହିଁରେ ବିଶ୍ୱାସ କର ଏବଂ ବାହାରର ବିଚାର ଗ୍ରହଣ କର ନାହିଁ । ସେଗୁଡ଼ିକ କିଛି ନୁହେଁ, ଆମେ ତାକୁ ନଷ୍ଟ କରିଦେବା, ଆମେ ତାଙ୍କୁ ଉର୍ଦ୍ଧ୍ୱ ଦେଶରେ ଉଦୟ କରିପାରିବା ।

୪୬

ଗୋଦୁଗ୍ଧର ଦେବତା 'ସୋମ' । 'ସୋମ'କୁ ଅମୃତ ମଧ୍ୟ କୁହାଯାଇଛି । ଗାଈର ଦୁଧ ଅମୃତ ସମ ଗୁଣକାରୀ ତଥା ଅତ୍ୟନ୍ତ ସୁପାଚ୍ୟ । ଏହି ଦୁଧରେ ୩.୫ ରୁ ୪

ପ୍ରତିଶତ ସ୍ନେହସାର ରହିଛି ଏବଂ ମଇଁଷି ଦୁଧରେ ୫.୫ରୁ ୬ ପ୍ରତିଶତ ସ୍ନେହସାର ଅଛି । ମଇଁଷି ଦୁଧରେ କୋଲଷ୍ଟଲ ହୋଇଥାଏ ଯାହା ରକ୍ତ ଧମନୀରେ ଜମା ହୋଇଥାଏ ତଥା ହାର୍ଡ଼ ଆଟାକ୍‌ର କାରଣ ହୋଇଥାଏ । ଏହାର ବିପରୀତ ଗାଈ ଦୁଧରେ । ସ୍ୱର୍ଣ୍ଣିମ ଆଭାଯୁକ୍ତ କୈରୋଟିନ୍ ତତ୍ତ୍ୱ (ପଦାର୍ଥ) ରହିଛି । ଯାହା ଶରୀରରେ ସ୍ୱର୍ଣ୍ଣ ଧାତୁର ପୂର୍ତ୍ତି କରିଥାଏ । ଗୋଦୁଗ୍ଧର ପୀତାଭ ବା ସ୍ୱର୍ଣ୍ଣାଭ ଆଭା ଏବଂ ତହିଁରେ ନିହିତ ସ୍ୱର୍ଣ୍ଣତତ୍ତ୍ୱ ହିଁ ରହିଥାଏ । ସ୍ୱର୍ଣ୍ଣ 'ହୃଦୟ ରୋଗ' ନିଦାନ ପାଇଁ ଅତି ଆବଶ୍ୟକ ତତ୍ତ୍ୱ । ଅତଃ ଗାଈର ଦୁଧ ଏବଂ ଘିଅ ହାର୍ଟ୍ ଆଟାକ୍‌ର ସୁରକ୍ଷା କବଚ ।

ଗାଈର ଦୁଧ କାୟାକୁ ନିରୋଗ ରଖିଥାଏ ତଥା ବୁଦ୍ଧି ବର୍ଦ୍ଧକ । ମହାଭାରତରେ ଯକ୍ଷର ପ୍ରଶ୍ନ ଅମୃତ କ'ଣ ? ପ୍ରତ୍ୟୁତ୍ତରରେ ଯୁଧିଷ୍ଠିର କହିଛନ୍ତି- ଗାଈର ଦୁଧ ଅମୃତ । ପୁରାତନ କାଳରେ ଦେବତା, ଋଷିଗଣ, ମୁନିଗଣ, ତପସ୍ୱୀମାନଙ୍କର ପ୍ରଧାନ ଆହାର ଦୁଗ୍ଧ ହିଁ ଥିଲା ।

**୪୭**

କର୍ମେନ୍ଦ୍ରିୟ ଦ୍ୱାରା କରାଯାଉଥିବା କର୍ମରୁ ଆମେ ଯେବେ ବିରତ ହୋଇ କୌଣସି ନିରୋଳା ସ୍ଥାନରେ ବସିଯାଉ, ତେବେ ମନରେ ଅସଂଲଗ୍ନ ଭାବନାର ଜୁଆର ଆସେ । କର୍ମମୁଖର ହେଲାବେଳେ ସାଧାରଣତଃ (ତାହା) କର୍ମରେ ସଂଯୁକ୍ତ ହୋଇଥାଏ । ଯଦିଓ ସେହି ସମୟରେ ଅସଂପୃକ୍ତ ଭାବନାରାଜି ମନରେ ଉଦ୍ରେକ ହୋଇଥାଏ । ଯେବେ ଆମେ ସଚେତନ ଭାବେ ଅଥବା ତଲ୍ଲୀନ ହୋଇ କୌଣସି କାର୍ଯ୍ୟରେ ଏକାକାର ହେଇଯାଉ କିମ୍ବା ଏହି ଅଭ୍ୟାସକୁ ନିରନ୍ତର ଧରିରଖୁ ତେବେ ମନର ବିକ୍ଷିପ୍ତ ଭାବନା ଏକୀକୃତ ହୋଇଥାଏ । ଏଥିର ଅନ୍ୟ ଏକ କାରଣ ହେଲା ବ୍ୟକ୍ତିଗତ ବା ଗୋଷ୍ଠୀଗତ କାର୍ଯ୍ୟ କରିବା ସମୟରେ ଆମ ଇଚ୍ଛା- ଅନିଚ୍ଛାର ପ୍ରଶ୍ନ । ଅର୍ଥାତ୍ ସଂପୃକ୍ତ କର୍ମ ପାଇଁ ଆମେ କେତେ ମାନସିକ ସ୍ତରରେ ପୂର୍ବରୁ ବା ଏବେ ପ୍ରସ୍ତୁତ ତଦନୁସାରେ ତହିଁରେ ସମର୍ପିତ ଭାବନା ରହେ । ଯଦି ଆମେ ସର୍ବଦା କଲ୍ୟାଣକର କର୍ମ ସଂପୃକ୍ତିରେ ରହିବା, ତେବେ ମନରେ ଉତ୍ତମ ବାସନାର ସଂଚାର ଘଟିବ । ଶାସ୍ତ୍ରୀୟ ଆଧାରରେ କର୍ମ ଆମ ନ-କାରାତ୍ମକ, ଭ୍ରମାତ୍ମକ ଚିନ୍ତାରୁ ନିଷ୍କୃତି ଦେବ । ଫଳରେ ମନ ନିଷ୍କଳୁଷ, ଶୁଦ୍ଧ ହେବ । ଏହି ଅଭ୍ୟାସ ଧାରାବାହିକ ଅତୁଟ ରହିଲେ ମନ ଶୁଭ ଚିନ୍ତାରେ ସଂଲଗ୍ନ ହେବ ଏବଂ ଈଶ୍ୱରାର୍ପିତ ହେବାକୁ ଭାଜନ ହେବ ।

## ୪୮

ବର୍ଷା ବୁଝେନା ସେ ସାଗରରେ ବୃଷ୍ଟି କରୁଛି କି ପର୍ବତରେ କି ଶସ୍ୟ କ୍ଷେତ୍ରରେ ଅଥବା ନଦୀ, ନାଳ, ତଡ଼ାଗ କିମ୍ବା ଜନବସତିରେ । କିନ୍ତୁ ଯେଉଁ ସ୍ଥାନରେ ବୃଷ୍ଟି ଜଳକୁ ଧାରଣ କରିବା ସାମର୍ଥ୍ୟ ରହିଛି ସେହି ସ୍ଥାନ ହିଁ ଜଳଧାରଣ କରିବାକୁ ସକ୍ଷମ ହୋଇଥାଏ । ବିଭୁକୃପା ଅନବରତ ବୃଷ୍ଟି ହୋଇଯାଉଛି । କେବଳ ଆମର ଆଧାର ଅନୁସାରେ ତାହା ପ୍ରତିଭାତ ହୁଏ । ଅର୍ଥାତ୍ ପ୍ରବାହିତ ନଦୀକୁ ଯଦି ଆପଣ ବୋତଲ, ଗରା, ବାଲ୍‌ତି, ଢାଳ, ମାଠିଆ ଇତ୍ୟାଦି ମଧ୍ୟରୁ ଯାହାକୁ ସଂଗରେ ନେଇ ଯାଇଥିବେ କେବଳ ସେତିକି ଜଳ ହିଁ ଆଣି ପାରିବେ । ସୁତରାଂ ଆପଣଙ୍କ ଆଧାର ପାତ୍ର ଅନୁସାରେ ତାହା ଆପଣଙ୍କୁ ପ୍ରାପ୍ତ ହେବ । ଆପଣଙ୍କ ଅନୁକୂଳ ବିଚାର ଅନୁସାରେ ଆପଣ ତାହାକୁ ବୁଝିପାରିବେ । ଜାଣିପାରିବାକୁ, ଅନୁଭବ କରି ପାରିବାକୁ ସକ୍ଷମ ହେବେ । ସାଧନା ବା ତପସ୍ୟା ବୋଲି ଯାହା ଶାସ୍ତ୍ରରେ କଥିତ, ତାହା କେବଳ ନିଜ ଯୋଗ୍ୟତାକୁ ନିର୍ମାଣ କରିବା । ବସ୍ତୁତଃ ଏହା ଏକ ଜୀବନବ୍ୟାପୀ ପ୍ରଚେଷ୍ଟା ।

## ୪୯

ନିଷ୍ଠାବାନ ତଥା ସାଧୁ ଉଦ୍ୟମୀ କର୍ମ ସାଫଲ୍ୟ ଲାଭ କରନ୍ତି । ସେ ତାଙ୍କ ଉପରିସ୍ଥଙ୍କ ଦ୍ୱାରା ନନ୍ଦିତ ହୋଇଥାନ୍ତି । ଏହା ସାତ୍ତ୍ୱିକ ସାଧୁତା ପାଶ୍ଚାତ୍ୟ ଆଧାର ହେଉଛି ସାଧୁତା ସର୍ବୋତ୍ତଙ୍କ ନୀତି (Honesty is the best policy) ପ୍ରାଚ୍ୟ ଆଧାରରେ ଏହା ପବିତ୍ର ପୁଣ୍ୟ (Sacred virtue) ଯେଉଁ ବ୍ୟକ୍ତି ନିକଟରେ ଏହି ଦୁଇଗୋଟି ମହତ ଗୁଣ ରହିଛି ସେ ବିଶ୍ୱର କୌଣସି ସ୍ଥାନରେ ପ୍ରବେଶ କରିପାରିବ । ଲୋକେ ତାକୁ କୋଳେଇ ନେବେ । ନିଷ୍ଠାବାନ୍ ଏବଂ ସାଧୁ ବ୍ୟକ୍ତି ବହୁ ବିରଳ ।

ନିଷ୍ଠାବାନ୍ ବ୍ୟକ୍ତି ଅନ୍ୟର ଦୁଃଖ, ବେଦନା, ଯାତନାକୁ ଅନୁଭବ କରିପାରେ ଏବଂ ନିଜ ସାମର୍ଥ୍ୟ ଆଧାରରେ ସେ ସବୁକୁ ଦୂର କରିବାକୁ ଚେଷ୍ଟିତ ହୁଏ । ସେ ସହାନୁଭୂତିଶୀଳ ହୋଇଥାଏ । ସେ କୋମଳ ହୃଦୟ ସଂପନ୍ନ । ନିଷ୍ଠାବାନ୍ ବ୍ୟକ୍ତି ମେଧାବୀ । ସେ କୁଟୀଳତା, ଶଠତା, ଜଟିଳତା, ଷଡ଼ଯନ୍ତ୍ରଠାରୁ ଦୂରରେ ଥାଏ । ଲୋକେ ତା' କାମକୁ ବିଶ୍ୱାସ କରନ୍ତି । ନିଷ୍ଠାବାନ୍ ବ୍ୟକ୍ତି ସର୍ବଦା ବିଶ୍ୱାସୀ । ତା' ପାଖରେ ଛନ୍ଦନ୍ତାର ଚିହ୍ନନଥାଏ । ସେ ନିଷ୍କପଟୀ, ସାଧୁ ଏବଂ ସତ୍ୟ ଆଧାରିତ ।

କୌଣସି କାର୍ଯ୍ୟକୁ ପଛଘୁଞ୍ଚା ଦିଏ ନାହିଁ । ଲୋକେ ନିଷ୍ଠାବାନ୍ ବ୍ୟକ୍ତିକୁ ତାଙ୍କ କାର୍ଯ୍ୟ ସାଫଲ୍ୟ ପାଇଁ ଆଗ୍ରହ ପ୍ରକାଶ କରିଥାନ୍ତି । ନିଷ୍ଠାବାନ ଉତ୍ତମ ଆଚରଣକାରୀ ଏବଂ ପ୍ରଭୁଭକ୍ତ, କେବେହେଲେ ମନ ଓ କର୍ମରେ (ମାଲିକ) ପ୍ରଭୁଙ୍କ କ୍ଷତି ଚାହିଁ ନଥାଏ ।

ଆଧ୍ୟାତ୍ମିକ ଯାତ୍ରାପଥରେ ନିଷ୍ଠା ଏକ ଗୁରୁତ୍ୱପୂର୍ଣ୍ଣ ଗୁଣ । ସମଗ୍ର ଭଗବତ୍ ଗୀତାରେ ଗୋଟିଏ ତତ୍ତ୍ୱ ପ୍ରତିଧ୍ୱନିତ ଯେ ଆତ୍ମାନୁଭୂତି ପଥରେ ଅଭିଳାଷୀ(ସାଧକ)ର ମହତ ଗୁଣ 'ନିଷ୍ଠା' ପବିତ୍ର ଭାବେ କଥିତ । ସଂସ୍କୃତରେ ଏହାକୁ 'ଆର୍ଜବ' କୁହାଯାଇଛି ।

**୫୦**

ଯେବେ ଆମେ କର୍ମ ନିବୃତ୍ତ ହୋଇ ନିରବରେ ନିର୍ବିଷୟ ମନରେ ବସିପଡୁ, ମନ ମଧ୍ୟରେ ଅସୁମାରୀ ଅସଂଲଗ୍ନ ଭାବନାର ଉତ୍ତାଳ ତରଂଗ ଦେଖାଦିଏ । ଯେବେ ଆମେ କୌଣସି କର୍ମରେ ବୁଡ଼ିଯାଉ, ଆମ ମନ ମଧ୍ୟ ସେହି କର୍ମ ସଂବଂଧିତ ହୋଇ ରହେ । ତତ୍କାଳରେ ମନ ମଧ୍ୟ ଅସଂପୃକ୍ତ ତଥା ବିକ୍ଷିପ୍ତ ହୋଇପାରେ । ଅଥବା ଅନ୍ୟ ନିକଟ ଦୂର ବସ୍ତୁ, ବ୍ୟକ୍ତି କିମ୍ବା ଘଟଣା ସହ ସଂଲଗ୍ନ ହୋଇପାରେ ।
ଅଥବା ଅନ୍ୟ ନିକଟ ଦୂର ବସ୍ତୁ, ବ୍ୟକ୍ତି କିମ୍ବା ଘଟଣା ସହ ସଂଲଗ୍ନ ହୋଇପାରେ ।
ଆମେ ନ୍ୟସ୍ତ କର୍ମ ଉପରେ ସର୍ବାନ୍ତକରଣରେ ନିମଜ୍ଜିତ ହେବା ବିଧେୟ, ଫଳତଃ ମନର ବିକ୍ଷିପ୍ତତା ନିୟନ୍ତ୍ରିତ ହୋଇରହିବ । ଶୁଭକର୍ମ କରିବାରେ ଅଧିକ ସମ୍ବନ୍ଧିତ ହେଲେ ମନରେ ମଧ୍ୟ ସେହି ଭାବନାର ସଂଚାର ଘଟିବ । ଧାର୍ମିକ ଗ୍ରନ୍ଥ ଅଧ୍ୟୟନ କରାଗଲେ ମନର ଭ୍ରମିତ ସ୍ଥିତି ଶାନ୍ତ ହେବା ସହିତ ତହିଁରେ ଭ୍ରାନ୍ତି, ପାପଯୁକ୍ତ ବିଚାର ଏବଂ ଦୂଷିତ ଭାବନା ଦୂର କରି ମନକୁ ବିମଳ କରିବା ଦିଗରେ ପ୍ରଚୋଦିତ କରେ । ଧାରାବାହିକ ଅଭ୍ୟାସ ଦ୍ୱାରା ଆମେ ଶାନ୍ତ ସମାହିତ ଏବଂ ସୁନିୟନ୍ତ୍ରିତ ମାନସିକ ସ୍ଥିତିରେ ଅଧିଷ୍ଠିତ ହୋଇପାରିବା ।

**୫୧**

କେତେ ସମୟ ପର୍ଯ୍ୟନ୍ତ ତୁମର କହିବା ଏବଂ ଶୁଣିବାର ଧୈର୍ଯ୍ୟ ରହିଛି ? ଯେଉଁ ସମୟରେ ତୁମେ ବିଭୁଙ୍କ ସଂପର୍କରେ ଭାଷାରେ ବର୍ଣ୍ଣନା କରିବାକୁ ଆରମ୍ଭ କରିବ

ଏବଂ ଶ୍ରବଣ କରିବାକୁ ଆରମ୍ଭ କରିବ, ସେ ସବୁ ତୁମର, ନିଜର । ଯେବେ ତୁମେ ଦେଖିପାର ବା ନ ଦେଖିପାର ଯେବେ କର୍ଣ୍ଣ ଶ୍ରବଣ କରେ ବା କରିନପାରେ, ଯେବେ ଜିହ୍ୱା କହିପାରେ ବା ନ କହିପାରେ, ସେତିକିବେଳେ କେବଳ ସେମାନେ (ସେହି ଇନ୍ଦ୍ରିୟଗୁଡ଼ିକ) ଦେଖିପାରନ୍ତି, ଶୁଣିପାରନ୍ତି ଏବଂ କହିପାରନ୍ତି ପ୍ରଭୁଙ୍କ ସଂପର୍କରେ । ପରମ ପୁରୁଷ କେବଳ ଅନୁଭବଗମ୍ୟ । ଭିନ୍ନତାରେ ସେ ବୋଧ ନୁହଁନ୍ତି । ଯେବେ ଈଶ୍ୱରଙ୍କ ଗୁଣ ଭିନ୍ନ ଅନ୍ୟ କିଛି କହିନଥାଅ, ତେବେ ଈଶ୍ୱର ସ୍ୱୟଂ ତୁମକୁ ସୂଚାଇ ଦେବେ । ଏହା କେବଳ ସଂଭବ ହେବ ଯେବେ ତୁମ ହୃଦୟ ତାଙ୍କଠାରୁ ସାମାନ୍ୟତମ ପୃଥକ୍ ହୋଇ ନଥିବ । ଅର୍ଥାତ୍ ତାଙ୍କ ସହ ଏକୀକୃତ, ଅଥବା ସମାହିତ ହୋଇଯାଇଥିବ ।

**୫୨**

ମହାପାତକୀ ଯଦି ଭକ୍ତରେ ପରିଣତ ହୋଇଯାଏ, ତେବେ ସେ ମୁଗ୍ଧ ହୋଇ ବିଭୁଙ୍କ ଗୁଣଗାନ କରିବାକୁ ଲାଗେ । କାଠଖଣ୍ଡେ ଯଦି ଅନଳରେ ସଂଯୁକ୍ତ ହୁଏ, ତେବେ ଅଗ୍ନି ତାକୁ ତଦାକାର କରିଦିଏ । ଏବେ ତାକୁ ନିଆଁରୁ ପୃଥକ କିପରି କରିବା ? ଯେପରି ଅଗ୍ନି କାଠଖଣ୍ଡକୁ ନିଆଁରେ ପରିଣତ କରିବାକୁ ଅସମ୍ମତ ହୋଇନଥାଏ, ଅର୍ଥାତ୍ ତାକୁ ନିଜ ରୂପରେ ପରିଣତ କରିଦିଏ, ସେହିପରି ପରମାତ୍ମା କୌଣସି ଆତ୍ମା (ଜୀବାତ୍ମା)କୁ ଗ୍ରହଣ କରି ନିଜରୂପ ପ୍ରଦାନ କରିବାକୁ ଅସମ୍ମତ ହୁଅନ୍ତି ନାହିଁ । ଏହା ପରମେଶ୍ୱରଙ୍କର ଅସୀମ ପ୍ରେମର ନିଦର୍ଶନ । ସୁତରାଂ ଆତ୍ମସ୍ୱରୂପକୁ କେବଳ ଜାଣିବା ଦ୍ୱାରା ତାଙ୍କ ସ୍ୱରୂପକୁ ପ୍ରାପ୍ତ ହୋଇଥାଏ । ଏହାର ଅର୍ଥ ହେଲା ତାଙ୍କ ପ୍ରତି ପରିପୂର୍ଣ୍ଣ ସମର୍ପଣ ।

ତୁମେ ଯାହା କିଛି କୁହ କିମ୍ୱା କର, ତୁମ ଶବ୍ଦ ଯେତେ ମଧୁର ହେଉ, ପୂଜା ଯେତେ ପବିତ୍ର ହେଉ, ଉପଚାର ଯେତେ ଅନୁକୂଳ ହେଉ, ସେ ସକଳ ନିର୍ଜୀବ ଯନ୍ତ୍ର ତୁଲ୍ୟ ଅକର୍ମଣ୍ୟ । ବସ୍ତୁତଃ ଜଣେ ଈଶ୍ୱରଙ୍କୁ ଜାଣିବ କେବଳ ଭକ୍ତଟିଏ ହୋଇପାରିଲେ । ଭକ୍ତ ସେହି ହେବ ଯେ କେବଳ ତାଙ୍କର ହୋଇପାରିବ, କେବଳ ତାଙ୍କର ।

**୫୩**

ଏହି ଶରୀର ସହ ସଂପୃକ୍ତି- ନିଜକୁ ଶରୀର ବୋଲି ଏକାକାର ସ୍ୱୀକାର କରିବା

ସକଳ ଅନିଷ୍ଟର ମୂଳ । ସମସ୍ତ ଭୟ, ଭ୍ରାନ୍ତି ଏବଂ ପାପ ତହିଁରୁ ସୃଷ୍ଟି । ଚୋରି କରିବା, ଆଘାତ କରିବା, ମନୁଷ୍ୟମାନଙ୍କୁ ଧ୍ୱଂସ କରିବା ଏପରିକି ଶରୀର, ଜୀବନକୁ ରକ୍ଷା କରିବାକୁ ହତ୍ୟା କରିବା ପାଇଁ ସଂକୁଚିତ ବା ପାପୀ ହୁଏ ନାହିଁ । କାମିନୀ- କାଂଚନ କେବଳ ତା'ର ଉପାସନାର ବିଗ୍ରହ ହୋଇଥାନ୍ତି । ପରିଣାମରେ ସେ ଆନନ୍ଦ ଆଶା କରି ଦୁଃଖକୁ କୋଳାଗ୍ରତ କରିଥାଏ । ପ୍ରାପ୍ତ ଶରୀରକୁ ରକ୍ଷା କରିବାକୁ ମୃତ୍ୟୁ ଆଲିଂଗନ କରେ । ସେ ପ୍ରତିମୁହୂର୍ତ୍ତରେ ମୃତ୍ୟୁକୁ ଭୟ କରୁଥାଏ । କିନ୍ତୁ ଆଲୋକିତ ଆତ୍ମା, ଯେ ଶରୀର ଭାବରୁ ଉର୍ଦ୍ଧ୍ୱକୁ ଉତ୍‌ଥିତ ହୋଇଛି, ସେ ଏପରିକି ଗୋଟିଏ ସାଧାରଣ ପଶୁ ପାଇଁ ଜୀବନକୁ ଉତ୍ସର୍ଗ କରିଦେଇଥାଏ । ଏ ଶରୀର ତା' ପାଇଁ କହିବାକୁ ଗଲେ କିଛି ନୁହେଁ, ଗୁରୁତ୍ୱହୀନ ଉପାଦାନ । ମନୁଷ୍ୟ ମୁଖ୍ୟତଃ ଦ୍ୱିବିଧ- ପଶୁମଣିଷ ଏବଂ ଦେବମଣିଷ । ଯେଉଁମାନେ ଶରୀର ସହିତ ନିଜର ଏକତ୍ୱ ସ୍ଥାପନ କରନ୍ତି ଏବଂ ଯେଉଁମାନଙ୍କର ଶରୀର ଜ୍ଞାନର ଉର୍ଦ୍ଧ୍ୱରେ । ଶରୀର ସହ ବନ୍ଧନ ବ୍ୟକ୍ତି ପଶୁ ମଣିଷ ଏବଂ ଅପରବର୍ଗ ଶରୀରବୋଧରୁ ଉର୍ଦ୍ଧ୍ୱରେ, ସେମାନେ ଦେବ ମାନବ ।

(ସ୍ୱାମୀ ବରଦାନନ୍ଦ)

**୫୪**

କଦାପି ଭୁଲିଯାଅ ନାହିଁ ଯେ ମନୁଷ୍ୟ ଜୀବନର ଅନ୍ତିମ ଲକ୍ଷ୍ୟ ଈଶ୍ୱରାନୁଭୂତି । ଯଦି ତୁମେ ଜୀବନକୁ ଆହାର, ନିଦ୍ରା ଏବଂ ସୁଖ ପାଇଁ ବ୍ୟତୀତ କରିଦେଲ ତାହାତ ପଶୁର ଜୀବନ । ଅଳସୁଆ ବ୍ୟକ୍ତି ଗଳ୍ପ କରି, ନିଷ୍ଫଳ କ୍ରିୟା କରି ବିତିଯାଏ ତେବେ ତାହା ବ୍ୟର୍ଥ ଏବଂ ଯାହାର ପରିଣତି ଦୁଃଖ ତଥା ଅନୁଶୋଚନା । ପିଣ୍ଡରେ ପ୍ରାଣ ଥିବା ପର୍ଯ୍ୟନ୍ତ ତୁମେ ତୁମର ସକଳ ଶକ୍ତି, ସଂପୂର୍ଣ୍ଣ ଆନ୍ତରିକ ଉଦ୍ୟମ ସହ ଈଶ୍ୱରାନୁଭୂତି ଉଦ୍ଦେଶ୍ୟରେ ଲାଗିପଡ଼ । କୌଣସି ସାଂସାରିକ କର୍ମର ଆଳ ଦେଖାଇ ଉଦ୍ୟମରୁ ବିଚ୍ୟୁତ ହୁଅ ନାହିଁ । ଏହି ଅଭ୍ୟାସ କରିବାକୁ ଆପଣ ଭାଜନ ହେବେ ଯେବେ ଈଶ୍ୱର ଆପଣଙ୍କୁ ଦୟାଦ୍ର ଦୃଷ୍ଟି ଦେବେ ।

ଅଳସୁଆମାନେ କିଛି କରନ୍ତି ନାହିଁ । ସେମାନେ କେବେ ହେଲେ କୌଣସି କାର୍ଯ୍ୟରେ ଆଗ୍ରହୀ ନୁହଁନ୍ତି । କିଛି କରିନଥାନ୍ତି । କିଛି ହେଲେ ଭଲ କାମ ତାଙ୍କ ହାତରେ ହେବ ନାହିଁ ।

**୫୫**

ଜୀବ ପ୍ରାଥମିକ ସ୍ତରରେ ଅଜ୍ଞତା ସ୍ଥିତିରେ ଥାଏ । ସେ ଈଶ୍ୱର ସଚେତନ ନଥାଏ । କାରଣ ସେ ନିଜେ ବିବିଧତାକୁ ଦେଖୁଥାଏ । ଜ୍ଞାନ ରାଜ୍ୟରେ ପ୍ରବେଶ କଲେ ସେ ସକଳ ପ୍ରାଣି ମଧ୍ୟରେ ଈଶ୍ୱରଙ୍କୁ ଦେଖିଥାଏ । ଧରିନିଅ କାହାରି ଗୋଇଠିରେ କଣ୍ଟା ଫୁଟିଗଲା । ସେ ଆଉ ଗୋଟିଏ କଣ୍ଟା (ଛୁଞ୍ଚି) ଆଣି ତାକୁ ବାହାର କରିଦେବ । ଅନ୍ୟ ଭାଷାରେ କହିଲେ- ସେ ଅଜ୍ଞାନକୁ ଜ୍ଞାନ ସାହାଯ୍ୟରେ ବାହାର କରିଦେଲା ।

କିନ୍ତୁ ବିଜ୍ଞାନ ସ୍ଥିତିରେ ପହଂଚିଗଲେ ସେ ଅଜ୍ଞାନ ଓ ଜ୍ଞାନକୁ ମଧ ପରିହାର କରିଦେବ । ତେବେ ସେ ଈଶ୍ୱରଙ୍କ ସହ ଦିବାରାତ୍ର ସଂଯୁକ୍ତ ହୋଇ ରହିପାରିବ ।

ଏହା ଅନ୍ୟ କିଛି ନୁହେଁ ଈଶ୍ୱର ଦୃଷ୍ଟି ।

ଯେ କେବଳ ଦୁଗ୍ଧକୁ ଶୁଣିଛି, ସେ ଅଜ୍ଞାନ । ଯେ ଦୁଗ୍ଧ ଦେଖିଛି ସେ ଜ୍ଞାନଲାଭ କରିଛି । ଯେ ଦୁଗ୍ଧ ପାନ କରି ସଶକ୍ତ ହୋଇଛି ସେ ବିଜ୍ଞାନ ସ୍ଥିତିରେ ପ୍ରବିଷ୍ଟ ହୋଇଛି । (ଶ୍ରୀରାମକୃଷ୍ଣ)

**୫୬**

ଯେ ସର୍ବଦା ଈଶ୍ୱରଙ୍କ ସଂପର୍କରେ ସ୍ମରଣ କରନ୍ତି ଏବଂ ଚିନ୍ତା କରନ୍ତି, କର୍ମ ପ୍ରବାହ ମଧ୍ୟରେ ମଧ ସେ ତାଙ୍କ ନାମଜପ କରିଥାନ୍ତି, ତାଙ୍କୁ ବିପଦ-ଆପଦରେ ମଧ ବିସ୍ମୃତ ହୁଅନ୍ତି ନାହିଁ, ଏପରିକି ମୃତ୍ୟୁର ଅବ୍ୟବହିତ ପୂର୍ବକ୍ଷଣରେ ମଧ ତାଙ୍କୁ ଚିନ୍ତା କରିଥାନ୍ତି, ମୃତ୍ୟୁର ପଦଧ୍ୱନିରେ ସେ ଶଂକିତ କିମ୍ବା ବିଚଳିତ ହୋଇନଥାଏ । ଅନ୍ୟମାନେ ତାକୁ ସଂସାର ମଧ୍ୟକୁ ବିତ୍ତ ଦିଗକୁ ଆକର୍ଷିତ କରନ୍ତି, କିନ୍ତୁ ତା'ର ମନ ତ ତାଙ୍କଠାରେ ଲାଖି ଯାଇଛି । ତାଙ୍କ ଉପସ୍ଥିତିକୁ ଅନୁଭବ କରୁଥାଏ । ଏହି ପ୍ରକାର ସଂପୃକ୍ତି ଜନ୍ମମୃତ୍ୟୁ ଚକ୍ରରୁ ନିଷ୍କୃତି ଦେଇଥାଏ । ସତତ ଅଭ୍ୟାସ ଦ୍ୱାରା, ସ୍ମରଣ ଏବଂ ଚିନ୍ତନ ଦ୍ୱାରା ତାଙ୍କ ଉପସ୍ଥିତି ଅନୁଭବ କରିହେବ । ଏହି ସ୍ମରଣ କ୍ରିୟା ତାଙ୍କର ଅଭ୍ୟାସଗତ ହୋଇ ଯାଇଥାଏ ।

**୫୭**

ସମସ୍ତ ପ୍ରାଣୀ ଆନନ୍ଦ ଚାହିଁଥାନ୍ତି । ଆନନ୍ଦ ସଂଧାନରେ ସମଗ୍ର ଜୀବନ ଧାବିତ

ହୋଇଥାନ୍ତି । ଆମେ ସେହି ଆନନ୍ଦକୁ ବିସ୍ତୃତ କରିପାରିବା କିମ୍ବା ସଂକୁଚିତ କରିପାରିବା । ଜଣେ ବ୍ୟକ୍ତିର ଛୋଟ ଘରଟିଏ ଥିଲା । ସେ କହିଲା ମୁଁ ଏହି ଘରୁ ଗୋଟିଏ ପ୍ରାସାଦର ଆନନ୍ଦ ପାଉଛି । ଅନ୍ୟ କାହାରି ପ୍ରାସାଦ ରହିଛି, ଯେଉଁଠି ସେ ରହିବାକୁ ଚାହୁଁ ନାହିଁ, କୁଟୀର ନିବାସୀ ଠାରୁ ତା'ର ଆନନ୍ଦର ତୁଳନା କିପରି ବା ହେବ ? ସାଫଲ୍ୟ ଏବଂ ଆନନ୍ଦର ରହସ୍ୟ ନିଜ ଭିତରେ ଲୁଚିରହିଛି । ତୁମ ପାଖରେ ଯଦି ପ୍ରତୁଳ ସାଫଲ୍ୟ ଏବଂ ପ୍ରାଚୁର୍ଯ୍ୟ ବାହ୍ୟତଃ ରହିଛି, କିନ୍ତୁ ଅନ୍ତଃସ୍ଥଳରେ ବାସ୍ତବ ସାଫଲ୍ୟ ନାହିଁ । ଜଣେ କୋଟିପତି ସଫଳ ହୋଇପାରେ ମାତ୍ର ସୁଖୀ ନୁହେଁ । ତୁମ ପାଖରେ ଯଦି କୋଟି ଡଲାର ଅଛି ବା ପ୍ରାପ୍ତ ହୋଇଛି, ତେବେ ବି ଆମ ବିଚାରରେ ତୁମେ ସଫଳ ହୋଇ ନପାର । ତୁମେ ଧନୀ କିମ୍ବା ନିର୍ଦ୍ଧନ ହୁଅ, ଜୀବନରେ ତୁମେ ଯଦି ସୁଖୀ, ଆନନ୍ଦିତ ହୋଇପାରିବ ତାହା ହିଁ ଜୀବନର ସାଫଲ୍ୟ ।

**୫୮**

ଆମ ମଧ୍ୟରେ ଖରାପ ସଂସ୍କାର ସଂଚିତ କରି ରଖିବା ଅଫେରନ୍ତା ଜମା (ବ୍ୟାଙ୍କ) ପରି । ଗଚ୍ଛିତ ସଂସ୍କାର ଏବେ ହେଉ ବା ଜନ୍ମାନ୍ତରେ ହେଉ, ତୁମକୁ ଭୋଗିବାକୁ ହେବ । ସେ ସମସ୍ତ ସମାପ୍ତ ନହେବା ପର୍ଯ୍ୟନ୍ତ ଆବାଗମ ଚକ୍ରରେ ଭ୍ରମିତ ହେବାକୁ ହେବ ହିଁ ହେବ । କଥାରେ- କର୍ମରେ ଯେଉଁ ସବୁ ମନ୍ଦ ଭାବନା କ୍ରିୟା ଦ୍ୱାରା କର୍ମ କରାଗଲା ତାହାର ଫଳ ଭୋଗ ପାଇଁ ଆଗାମୀ ବହୁ ଜନ୍ମ ନେବାକୁ ହେବ । କର୍ମ ବନ୍ଧନ, ସଂସ୍କାର ସମାପ୍ତ ହେବା ପାଇଁ ସଚେତନ ଭାବରେ ବାଣୀ, କର୍ତ୍ତବ୍ୟ, କର୍ମକୁ ନିର୍ଦ୍ଧାରିତ ତଥା ପ୍ରସାରିତ କରିବାର ସତତ ପ୍ରୟାସୀ ହେବା । ଫଳରେ ପୂର୍ବ ସଂସ୍କାର ବିଳୟ ଭଜିବ । ନିଜେ ନିଜର ନିୟନ୍ତକ, ନିଜେ ନିଜ କର୍ମ ବନ୍ଧନର କାରକ, ଏହି ବିଚାର ଆଧାରରେ ପ୍ରତିଷ୍ଠିତ ହେବା । ଅବଶେଷ ଜୀବନରେ ସଦାଚାରୀ ବ୍ରତ ଧାରଣ କରିବା ଦ୍ୱାରା ଜନ୍ମ ତଥା ଜୀବନ ମହିମାନ୍ୱିତ ହେବ ।

**୫୯**

ସତ୍ୟ କ'ଣ ? କୌଣସି ବ୍ୟକ୍ତି ବା ଘଟଣା ସଂବଂଧରେ ଯାହା ତୁମେ ଶୁଣିଲ, ଦେଖିଲ, ଅନୁଭବ କଲ ଅଥବା ଭାବିଲ ତାହାକୁ ଅନାବୃତ୍ତ ଭାବେ ସରଳ ଭାବେ

ପ୍ରକାଶ କରିବା ବା ବର୍ଣ୍ଣନା କରିବା । ସୁତରାଂ ଅନ୍ୟ ଭାବରେ କିମ୍ବା ଅନ୍ୟ ବସ୍ତୁର ଅବତାରଣା, ମୂଳ ବସ୍ତୁର ବିକୃତି, ଲୁପ୍ତ, ନିଜ ବିଚାରରେ ଘଟଣାର ବିସ୍ତାରକୁ ମିଥ୍ୟା କହିପାରିବା ।

କିନ୍ତୁ କାହିଁକି ଆମେ ଏପରି କରନ୍ତି ?

ତୁମେ କ'ଣ ଭାବୁଛ କି ଏହା ତୁମର ଅସହାୟତା । କିପରି ? ପୁରୁଷାନୁକ୍ରମିକ ଅହଂକାର ଯୋଗୁ ତୁମେ ଅନ୍ୟଠାରୁ କିଛି ଘଟଣା ଲୁଚାଇବାକୁ ଇଚ୍ଛାକର । ତେବେ ଏହା କ'ଣ ତୁମକୁ ସାହାଯ୍ୟ କରେକି ? ନାଁ, ଏହା ସତ୍ୟ ନୁହେଁ । ବାସ୍ତବତାଠାରୁ ଏହା ଦୂରରେ ଫଳତଃ ତୁମ ମାନସିକ ସ୍ତରରେ ଏହା କ୍ଷତ ସୃଷ୍ଟି କରିବ । ପୁନଃ ଯେ ଏକଥା ଶୁଣନ୍ତି ତାଙ୍କୁ ଏହା ସାହାଯ୍ୟ କରିବ କି ? ପୁଣି ନାଁ । ଯଦିଓ ସେମାନଙ୍କର ତହିଁରେ ସଂପୃକ୍ତି ରହିଥାଏ ମଧ୍ୟ । ତାଙ୍କ ଭିତରେ ଥିବା ଅହଂକାର କ୍ରିୟାଶୀଳ ହୁଏ ଏବଂ ତାହା ତାଙ୍କ ଅହଂକାର । ତୁମ ମିଥ୍ୟା ତାଙ୍କୁ ଉପକୃତ କରାଇ ପାରିବ ନାହିଁ । ତୁମ ମିଥ୍ୟା ପ୍ରକୃତି ବିରୋଧୀ ଏବଂ ପ୍ରକୃତି କେବଳ ସତ୍ୟକୁ ହିଁ ସମର୍ଥନ କରିବ, ବାସ୍ତବତାକୁ ସ୍ୱୀକାର କରିବ ।



ଟିକିଏ ଚିନ୍ତାକର; କ'ଣ ତୁମକୁ ଆନନ୍ଦ ଦେଉଛି ? ଭାବନା ହେଉଛି କି ତୁମ ଘରକୁ ଯେଉଁ ଅତିଥି ଆସୁଛନ୍ତି, ଯାହାଙ୍କୁ ତୁମେ ସ୍ୱାଗତ କରୁଛ, ତୁମ ସ୍ୱାମୀ- ଯାହା ସହିତ ତୁମେ ସମଗ୍ର ଜୀବନ ବ୍ୟତୀତ କରୁଛ, ଯେଉଁ ଶିଶୁ ତୁମ କୋଳରେ ସ୍ନେହାକାଂକ୍ଷୀ, ସମାଜ- ଯାହା ସହିତ ତୁମେ ସଂବଂଧାନ୍ୱିତ, ଏ ସକଳ ଭ୍ରାନ୍ତି ଅଥବା ସେ ସଚ୍ଚିଦାନନ୍ଦଙ୍କର ପ୍ରକାଶିତ ରୂପ ? ତୁମ ଅତିଥି ଭ୍ରମ ପ୍ରାଣୀ ନୁହଁନ୍ତି, କିନ୍ତୁ ତୁମ ମନ ଭିତରର ଧାରଣା 'ସେ ମୋର ଅତିଥି ହେଉଛି' ଭ୍ରମ । ତୁମ ସ୍ୱାମୀ ଭ୍ରମ ପ୍ରାଣୀ ନୁହଁନ୍ତି, କିନ୍ତୁ 'ସେ ମୋ' ସ୍ୱାମୀ' ଭାବନା କଳ୍ପିତ । ତୁମ କୋଳରେ ଥିବା ଶିଶୁ ମାୟାରୁ ସୃଷ୍ଟ ନୁହେଁ କିନ୍ତୁ 'ଏ ଶିଶୁ ମୋର' ଏହା ନିଶ୍ଚିତ ମାୟା । ତୁମେ ନିଜେ ମୋହ ଜୀବ ନୁହଁ, କିନ୍ତୁ ମୁଁ ଜଣେ ମହିଳା, ମୁଁ ଜଣେ ମା', ମୁଁ ଜଣେ ପତ୍ନୀ ହେଉଛି ମୋହ । ତୁମ ଅତିଥି, ତୁମ ସ୍ୱାମୀ, ତୁମ ଶିଶୁ ଏବଂ ତୁମେ ନିଜେ ସକଳେ ଏକ ଏବଂ ସମାନ ଅଦ୍ୱୈତ ବ୍ରହ୍ମ । ଏହା ହେଉଛି ଜ୍ଞାନର ସିଦ୍ଧାନ୍ତ, ସେହିପରି ମାୟାର ବାସ୍ତବ ତତ୍ତ୍ୱ ପ୍ରକାଶ ।

ଜ୍ଞାନୀ କେବଳ ପରିବର୍ତ୍ତନ ରୂପ ଦେଖେ ନାହିଁ, କିନ୍ତୁ ଅପରିବର୍ତ୍ତନୀୟ ନିରାକାର ପୂର୍ଣ୍ଣବ୍ରହ୍ମଙ୍କୁ ଦେଖିଥାଏ । ଅନ୍ୟ ଭାଷାରେ କହିଲେ- ରୂପ, ଆକୃତିକୁ ଦେଖେ ନାହିଁ, ସେ ସଂସାରକୁ ଦେଖି ମଧ୍ୟ ଦେଖେ ନାହିଁ, ସେ ସର୍ବତ୍ର ବ୍ରହ୍ମଙ୍କୁ ହିଁ ଦେଖିଥାଏ ।

**୬୧**

ଈଶ୍ୱରଙ୍କୁ ପ୍ରାପ୍ତି କରିବା ପାଇଁ ହେଲେ ଈଶ୍ୱରଙ୍କୁ ସ୍ମରଣ କର, କାରଣ ସେ ତୁମଠାରୁ ବିଯୁକ୍ତ ନୁହଁନ୍ତି । ସୃଷ୍ଟି ଆରମ୍ଭରୁ ସେ ତୁମ ସହିତ ଅଛନ୍ତି ଏବଂ ସେ ସଦାକାଳ ତୁମ (ଆମ) ସହିତ ରହିବେ । ଆମେ ତାଙ୍କଠାରୁ ଦୂରେଇ ଯାଉ, କାରଣ ଆମ ମନ ଅନ୍ୟତ୍ର ସଂସାରରେ ବ୍ୟସ୍ତ ରହେ ଏବଂ ଛୋଟଛୋଟ ସ୍ୱାର୍ଥ ପାଇଁ କଳହରେ ରତ ହୁଏ । ମୁଁ କ୍ରୋଧୀ, ମୁଁ ଦୁଃଖୀ, ମୁଁ ଭୋଗୀ, ମୁଁ ଅବୁଝା, ମୁଁ କାମୀ, ମୁଁ ମୋହୀ । ଆମେ ଶରୀର ନୋହୁ, ମନ, ବୁଦ୍ଧି, ଚିତ୍ତ ଅହଂକାର ନୋହୁ, କିନ୍ତୁ ଆମେ ନିଜକୁ ଭାବନା ସହ ସଂଯୁକ୍ତ କରିଦେଇ ସେପରି କହିଥାଉଁ । ଆପାତ କ୍ଷୁଦ୍ର ଅହଂ ସହ ସଂପୃକ୍ତ କରାଇଥାଉ । ଆମେ ଈଶ୍ୱରଙ୍କ ସଂତାନ । ତାଙ୍କ କରୁଣାର ପ୍ରତିଭୂକୁ ନିଜ ମଧ୍ୟରେ ଧାରଣ କର । ଜୀବନରେ ପରମ ତୃପ୍ତି, ପରମ ଆନନ୍ଦ, ପରମ ପ୍ରେମ, ଚରମ ଉପଲବ୍‌ଧି ପ୍ରାପ୍ତି ନକରିବା ପର୍ଯ୍ୟନ୍ତ ବିରତ ହୁଅ ନାହିଁ ।

ଈଶ୍ୱର ଆମର ସ୍ନେହମୟୀ ଜନନୀ, ପିତା, ଅଧ୍ୟାତ୍ମଚେତନା, ବନ୍ଧୁ । ସେ ଆମର ଏକମାତ୍ର କେବଳ ବାସ୍ତବ ପ୍ରେମ ।

**୬୨**

କୃଷ୍ଣା, ଧୂତପାପା, ସରସ୍ୱତୀ, ଗଂଗା, ଯମୁନାର ପାବନ ଜଳରାଶି ସହିତ କାଶୀଠାରେ ଏକତ୍ର ହୋଇ ଅଛନ୍ତି । ସେଠାରେ ପଂଚଗଂଗା ନାମରେ ନାମିତ । ତାହା ଏକ ବିଖ୍ୟାତ ତୀର୍ଥ କ୍ଷେତ୍ରରେ ତ୍ରିଭୁବନର ପୁଣ୍ୟ ତୀର୍ଥ ବାରି ସଂଗମ ସ୍ଥଳ । ଏଠାରେ ଯେ ବୁଡ଼ ପକାନ୍ତି ସେ ଆବାଗମ ଚକ୍ରରୁ ନିସ୍ତାର ପାଇଥାନ୍ତି । ପୂତ ସଲିଳ ତାଙ୍କ ସକଳ ପାପ ଦହନ କରିଥାଏ । କେବଳ ସ୍ନାନଦ୍ୱାରା ବ୍ରହ୍ମାଣ୍ଡ ମଣ୍ଡପ ସ୍ନାତ ହୋଇ ପରମାତ୍ମା ପ୍ରାପ୍ତି ହୁଏ । ବିଧି ଅନୁସାରେ ସ୍ନାନ ଦ୍ୱାରା ହିଁ ଏହି ଲାଭ ହୋଇଥାଏ । ମାଘ ମାସରେ ପ୍ରୟାଗ ପଂଚଗଂଗାରେ ସ୍ନାନ ଦ୍ୱାରା ଏବଂ କାଶୀରେ ଗୋଟିଏ ଦିନ ଅବସ୍ଥାନ ଫଳରେ ଏହି ପୁଣ୍ୟ ପ୍ରାପ୍ତି ହୁଏ । ଏହି ମାସରେ ବିଷ୍ଣୁ

ମାଧବ ଭାବେ ପୂଜିତ । ସ୍ନାନାନ୍ତେ ପିତୃ ପୁରୁଷଙ୍କୁ ତର୍ପଣ କରିବା ଦ୍ୱାରା ପୁନର୍ଜନ୍ମ ହୁଏ ନାହିଁ । ପିତୃଗଣଙ୍କୁ ଶ୍ରାଦ୍ଧ ପଂଚଗଂଗାରେ ଦେବା ଦ୍ୱାରା ସେ ଯେଉଁ ଯୋନିରେ ଥାଆନ୍ତୁ ନା କାହିଁକି ସେମାନେ ମୁକ୍ତି ଲାଭ କରିଥାନ୍ତି । ପଂଚଗଂଗାରେ ଶ୍ରାଦ୍ଧକର୍ମ କରନ୍ତେ ପ୍ରେତପତି ଯମ ପିତୃଲୋକଙ୍କୁ ପଚାରନ୍ତି ତୁମ ବଂଶଜ କେହି ପଂଚଗଂଗାରେ ତୁମ ଉଦ୍ଦେଶ୍ୟରେ ଶ୍ରାଦ୍ଧକର୍ମ କଲା ସୁତରାଂ ତୁମେ ମୁକ୍ତି ପ୍ରାପ୍ତ ହେଲ । ପଂଚଗଂଗାରେ ଦାନ ଦ୍ୱାରା ପୁଣ୍ୟ କଳ୍ପ ପର୍ଯ୍ୟନ୍ତ ଅକ୍ଷୟ ରହେ ।

**୬୩**

ପରମାତ୍ମା ପ୍ରାପ୍ତି ପାଇଁ ଇଷ୍ଟଙ୍କଠାରେ ଅନନ୍ୟ ମମତା, ସାତ୍ତ୍ୱିକ ଆହାର, ନିରନ୍ତର ଭଗବାନଙ୍କ ନାମ ସ୍ମରଣ ଜପ ତଥା ଚିନ୍ତନ ଆବଶ୍ୟକ । ସଂସାରରେ ସର୍ବଶ୍ରେଷ୍ଠ, ସର୍ବୋତ୍ତମ ବସ୍ତୁ ପ୍ରେମମୟ ପରମାତ୍ମାଙ୍କ ସ୍ୱରୂପ ପ୍ରାପ୍ତି । କିନ୍ତୁ ଏହା ହୁଏ ସଂସାରରୁ ଅତ୍ୟନ୍ତ ବୈରାଗ୍ୟ ହୋଇ ଭଗବାନଙ୍କଠାରେ ଅନନ୍ୟ ମମତା ତଥା ବିଶୁଦ୍ଧ ପ୍ରେମ ଦ୍ୱାରା । ପ୍ରଭୁଙ୍କ କୃପା ଉପରେ ବିଶ୍ୱାସ କରିବା ଦ୍ୱାରା, ତାଙ୍କ ନାମ ନେବା ଦ୍ୱାରା ଏବଂ ତାଙ୍କ ପ୍ରତି ଆତ୍ମସମର୍ପଣ କରିବା ଦ୍ୱାରା ଆମର ପାପ-ତାପ ଶାନ୍ତ ହୋଇଯିବ । ତତ୍ତ୍ୱଜ୍ଞାନ ବା ସତ୍‌କର୍ମରେ ହିଁ ଭବ ରୋଗର ନାଶ ହୋଇଥାଏ ଏବଂ ଉତ୍ତମ ପଦର ପ୍ରାପ୍ତି ହୋଇଥାଏ । ଭଜନ ଦ୍ୱାରା ଅନ୍ତଃକରଣ ଶୁଦ୍ଧ ହୋଇଥାଏ । ତେବେ ଶରୀର ଏବଂ ସଂସାରର ସତ୍ତା ବିଲୋପ ହୋଇଥାଏ । ଏକ ପରମାତ୍ମା ସତ୍ତା ହିଁ ରହିଯାଏ ।

ମୃତ୍ୟୁକୁ ପ୍ରତ୍ୟେକ ସମୟରେ ସ୍ମରଣ ରଖିବା ଏବଂ ସାଂସାରିକ ପଦାର୍ଥ ତଥା ଶରୀରକୁ କ୍ଷଣଭଂଗୁର ବୁଝିବା ଦରକାର, ତତ୍‌ସହିତ ଭଗବାନଙ୍କ ନାମ ଜପ, ସ୍ମରଣ, ଚିନ୍ତନ ଏବଂ ଧ୍ୟାନର ତୀବ୍ର ଅଭ୍ୟାସ କରିବା ଦରକାର । ଯେ ଏପରି କରନ୍ତି ପରିଣତିରେ ପରମାତ୍ମା ପ୍ରାପ୍ତ ହୋଇଥାନ୍ତି । ଯାହାଙ୍କର ଭଗବାନଙ୍କଠାରେ ନିଷ୍କାମ ଭକ୍ତି ହୋଇଛି, ତା' ହୃଦୟରେ ସମସ୍ତ ଦେବତା ଧର୍ମ ଜ୍ଞାନାଦି ଷଡ଼ୈଶ୍ୱର୍ଯ୍ୟ ସକଳ ସଦ୍‌ଗୁଣ ସହିତ ସଦା ନିବାସ କରିଥାନ୍ତି ।

ଈଶ୍ୱରଙ୍କ ଠାରେ ରାଗାତ୍ମିକା ଭକ୍ତିର ଉଦୟ ହେବାପରେ ସଂସାରର ରାଗ-ଦ୍ୱେଷ ସ୍ୱୟଂ ନିବୃତ୍ତ ହୋଇଯାଏ ।

ତେଷାଂ ସତତ ଯୁକ୍ତାନାଂ ଭଜତାଂ ପ୍ରୀତି ପୂର୍ବ କମ୍ ।
ଦଦାମି ବୁଦ୍ଧି ଯୋଗଂ ତଂ ଯେନ ମାମୁ ପ୍ରୟାନ୍ତି ତେ ।

(ଗୀତା ୧୦/୧୦)

୬୪

ଭାରତବର୍ଷର ପ୍ରାଣ ହେଉଛି ଧର୍ମ । ଧର୍ମଜ୍ଞାନ ଶିକ୍ଷାର ମୂଳ ଆଧାର । ଧର୍ମଜ୍ଞାନହୀନ ମନୁଷ୍ୟ ଆର୍ଯ୍ୟ ବିଚାରରେ ପଶୁ ବିବେଚିତ ହୁଏ । କିନ୍ତୁ ଆଜିର ଶିକ୍ଷାରେ ଧର୍ମର କୌଣସି ନାମଗନ୍ଧ ନାହିଁ । କେବଳ ଅର୍ଥକାରୀ ବିଦ୍ୟା ବାସ୍ତବ ବିଦ୍ୟା ପଦବାଚ୍ୟ ନୁହେଁ । ଏବେ ତ ବିଦ୍ୟା ଅର୍ଥକାରୀ ହୋଇ ରହି ନାହିଁ । ବିଶ୍ୱ ବିଦ୍ୟାଳୟରୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଛାତ୍ରଛାତ୍ରୀ ଡିଗ୍ରୀ ଧରି ବାହାରୁଛନ୍ତି ଏବଂ ସେମାନଙ୍କୁ କେଉଁଠିବା ଚାକିରି ମିଳୁଛି ? ପ୍ରଚଳିତ ଶିକ୍ଷାତ ଏ ଦୃଷ୍ଟିରୁ ଲାଭଦାୟକ ସିଦ୍ଧ ହୋଇପାରୁ ନାହିଁ । ଧର୍ମକୁ ତ ଏହି ଶିକ୍ଷାକ୍ରମରୁ ବାଦ୍ ଦିଆଯାଇଛି । ଏହି ଶିକ୍ଷାର ଏହା ପରିଣାମ ଯେ ଆଜି ଧର୍ମ ନାମରେ ମଧ୍ୟ ଲେଖି- ପଢ଼ି ଶିକ୍ଷିତ ବୋଲାଇବାର ଅଭିମାନ କରୁଥିବା ଲୋକ ନାସିକା କୁଂଚନ କରୁଛନ୍ତି । ଧର୍ମଭାବ ଲୋପ ହେବାରୁ ସଂଜମ, କର୍ତ୍ତବ୍ୟନିଷ୍ଠା, ବିଶ୍ୱାସ, ଦୁଷ୍କର୍ମ ଭୟ ମଧ୍ୟ ଲୋପ ପାଇ ଯାଉଛି । ଫଳରେ ବିବିଧ ସ୍ତରରେ ଦୂରାଚାର କାୟା ବିସ୍ତାର କରୁଛି । ବ୍ୟକ୍ତି, ସମାଜ, ଶାସନ ବ୍ୟବସ୍ଥା ସର୍ବତ୍ର ଅଶାନ୍ତି ଅସନ୍ତୋଷର କଳାବାଦଲ ଛାଇ ଯାଇଛି ।

୬୫

ମୌନର ପ୍ରଥମ ଦିନ ମୋତେ ବିଲକ୍ଷଣ ଶାନ୍ତିର ଅନୁଭବ ହେଲା । କହିବା ବଂଦ ହୋଇଯିବା ପରେ ମାନସିକ ସ୍ୱାଧ୍ୟାୟ ପ୍ରାରମ୍ଭ ହୋଇଗଲା । ଏହି ସ୍ୱାଧ୍ୟାୟ ଧାର୍ମିକ ପୁସ୍ତକ ଉପରେ ହିଁ ହେଉଥିଲା, ଏହାକୁ ବୁଝାଇ କହିବା ପ୍ରୟୋଜନ ନାହିଁ । ଆଜି ପର୍ଯ୍ୟନ୍ତ ଯେତେ ପୁସ୍ତକ ପଢ଼ିଛି ତନ୍ମଧ୍ୟରୁ ଅଧିକାଂଶ ଧାର୍ମିକ । ଅନ୍ୟ ଯାହା ପଢ଼ିଛି ତାହା ମଧ୍ୟ ଧାର୍ମିକ ଅଂଗ ରୂପେ ପଢ଼ିଛି, ପଢ଼ିବା ପରେ କେବଳ ଧ୍ୟାନ ଚିନ୍ତନ କରିଥାଏ । ଏଥିରୁ କେତେ ଶକ୍ତି ମିଳେ, ମୋତେ ପ୍ରଥମରୁ ଏହାର କଳ୍ପନା ନଥିଲା । ପ୍ରାୟତଃ ଅଦ୍ଭୂତ ଅନୁଭବ ହେଲା । ପରିଣାମ ସ୍ୱରୂପ ବିଚାର ବିକାଶର ଏକ ଶାସ୍ତ୍ର ହିଁ ମୋ' ସହିତ ଲାଗିଗଲା । ଯେପରି ଖେତରେ ବୀଜ ବପନ କରି ମାଟି ଢାଙ୍କି ଦିଆଯାଏ, ବୀଜ ଦେଖାଯାଏ ନାହିଁ, ପୁନଃ ଭିତରେ ଭିତରେ ତାହା ବିକଶିତ ହେଉଥାଏ । ତିନିଦିନ ପରେ ଯେବେ ଅଂକୁରଉଦ୍‌ଗତ ହୁଏ, ତେବେ ଅନୁଭବ ହୁଏ କି ଭିତରେ କେତେ ସୂକ୍ଷ୍ମ କ୍ରିୟା ସଂପନ୍ନ ହୋଇଛି । ସେହିପରି ପ୍ରାର୍ଥନା, ଧ୍ୟାନ, ଚିନ୍ତନ କରୁଥିବା ମନୁଷ୍ୟ ଉପରେ ନିଦ୍ରାରୂପକ ମାଟି ପକାଇ ଦେଲେ ତ କେବେ କେବେ ଜାଗୃତିରେ ଯେଉଁ ସମସ୍ୟାର ସମାଧାନ କରି ନ ପାରନ୍ତି, ତାହାର ସମାଧାନ ନିଦ୍ରାରେ ମିଳିଥାଏ । ଅଥବା ପ୍ରାତଃ ଉଠିବା ପରେ

ସୁନ୍ଦର ନିର୍ଣ୍ଣୟ ହୋଇଥାଏ । ଗଭୀର ସମାଧି ଫଳରେ ବିଚାରର ବିକାଶ ହୋଇଥାଏ । ବେଳେବେଳେ ଗଭୀର ସମାଧି ପରେ ଫଳ ମିଳି ନଥାଏ । ନିଦ୍ରା ପ୍ରକ୍ରିୟାରେ ମିଳିଯାଏ । ଏହା ମୋତେ ଏକାଧିକ ବାର ଅନୁଭବ ହୋଇଛି । ଏହି ସମୟରେ ମୋତେ ଶଙ୍କରାଚାର୍ଯ୍ୟଙ୍କର ଏହି କଥନର ପୂରା ତଥ୍ୟ ପ୍ରକଟ ହୋଇଅଛି ।

ନିଦ୍ରା ସମାଧି ସ୍ଥିତି । (ଶିବ ମାନସ ପୂଜା-୪)

(ସନ୍ଥ ବିନୋବା ଭାବେଙ୍କ ବିଚାର)

୬୨

'ଯାହା ହେଉଛି ଭଲ ପାଇଁ ହେଉଛି', କାରଣ ତହିଁରେ ସେହି ପରମ ପିତା ପରମାତ୍ମାଙ୍କ ଇଚ୍ଛା ନିହିତ । ଆମେ ସେ ସକଳ ସ୍ଥିତିର ପୁନରାବଲୋକନ ଯେବେ କରିଥାଉ, ଆମକୁ ଜଣାଯାଇଥାଏ କି ଏହା ଯାହା ହେଲା, ଆମର କିଛି ଇଚ୍ଛାର ପୂର୍ତ୍ତି ହୋଇଛି ଏବଂ ପରମାତ୍ମା ଅପ୍ରତ୍ୟକ୍ଷ ଭାବେ ତାହାକୁ ପୂର୍ଣ୍ଣ କରିବାରେ ଆମକୁ ସହାୟତା କରି ଅଛନ୍ତି । ସେ କେତେ କୃପାଳୁ । କେତେ ହିତୈଷୀ, ଆମର ପ୍ରତ୍ୟେକ ସଦିଚ୍ଛା ପୂର୍ଣ୍ଣ କରିଅଛନ୍ତି । ଦୁଃଖରେ, ସଂକଟରେ ଆମକୁ ମାର୍ଗ ଦେଖାଉଛନ୍ତି । ଆମ ପାଇଁ ସୁଖ, ଖୁସିର ବ୍ୟବସ୍ଥା କରୁଅଛନ୍ତି । ଆମେ ତାଙ୍କ ନିକଟରେ କୃତଜ୍ଞ ହେବା ଦରକାର । କୃତଜ୍ଞତାର ସହ ତାଙ୍କୁ ଧ୍ୟାନ କରିବା ଉଚିତ୍ । ଏଥିପାଇଁ ଆମେ ତାଙ୍କ ଉପରେ ନିର୍ଭର କରିବା ଉଚିତ୍ । ସେ ସର୍ବଜ୍ଞ, ସୁତରାଂ ତାଙ୍କ ଉପରେ ସବୁ ଭାର ଦେଇ ତାଙ୍କ ଆଜ୍ଞା (ସଂକେତ)ରେ ସମସ୍ତ କାର୍ଯ୍ୟ କରିଥାନ୍ତି । ଯଶ, କୀର୍ତ୍ତି, କର୍ମଫଳ ତାଙ୍କୁ ସମର୍ପିତ କରିବା ପରେ ହିଁ ଆମେ ଭ୍ରାନ୍ତ ଅହଂକାର, ଦମ୍ଭ ଏବଂ 'ଏହା ମୁଁ କରିଛି' ଯେପରି ନିଜ ପ୍ରଶଂସାରେ ନିଜକୁ ଦୂରରେ ରଖିପାରିବା; କାରଣ ଏହା ମାୟାର ପ୍ରଭାବ, ଅତଃ ନିଷ୍କାମ ଭାବରେ ଆମେ ତାଙ୍କୁ ସମର୍ପିତ ହୋଇ ସାଂସାରିକ କାର୍ଯ୍ୟ କରିବା ଉଚିତ୍ ।

୬୩

ଏହି ସଂସାର ଏକ ତୀବ୍ର ବେଗଗାମୀ ଗିରିନଦୀ ତୁଲ୍ୟ । ଯାହାକୁ ଉତ୍ସାହ ଏବଂ ମନୋଯୋଗ ପୂର୍ବକ କାର୍ଯ୍ୟ କରି ସାହସ ଏବଂ ସାମର୍ଥ୍ୟର ସହ ପାରିହେବା ହିଁ ବିଜୟର ସଂକେତ । ଜୀବନକୁ ସ୍ୱାସ୍ଥ୍ୟ, ଐଶ୍ୱର୍ଯ୍ୟ, ଶକ୍ତି ଏବଂ ଜ୍ଞାନ-ସଂପନ୍ନ ତଥା

ପରିପୂର୍ଣ୍ଣ କରି ଆମେ ରୋଗ ଶୋକରୂପୀ ପଥରରୁ ରକ୍ଷା କରି ସଂସାର ରୂପୀ ନଦୀକୁ ସୁଗମତା ସହିତ ପାରିକରି ପାରିବା । ବିଘ୍ନ ବାଧା ଉପସ୍ଥିତ ହେଲେ ନବୀନ ଉତ୍ସାହ, ସାହସ ଜାଗୃତି । ବିଘ୍ନ ରୂପରେ ପ୍ରକୃତି ଆମକୁ ଏୟା ସୂଚାଉଅଛି ଯେ ଆମେ ଭୁଲ ମାର୍ଗରେ ନଯାଉ, ବାଧା ଦ୍ୱାରା ବିବ୍ରତ ନହେଉ । ଯେଉଁ ପରିସ୍ଥିତି ଆମକୁ ଘେରି ରହିଛି, ତାହାର ଯଥୋଚିତ ଉପଯୋଗ କରିବା ବିଧି । ଏକାଗ୍ର ଭାବରେ କେନ୍ଦ୍ରିତ ଶକ୍ତି ଆଧାରରେ କାର୍ଯ୍ୟ ସଂପନ୍ନ ହୋଇପାରିବା । ଅସ୍ଥିରତା ପ୍ରାୟ ଆତ୍ମବିଶ୍ୱାସର ନ୍ୟୂନତାରୁ ହିଁ ହୋଇଥାଏ ।

୬୮

ଜୀବନ ଧାରଣ ହିଁ ଖାଦ୍ୟ ଗ୍ରହଣର ସର୍ବପ୍ରଥମ ହେତୁ । ଖାଦ୍ୟ ପାଇଁ ଆମେ ଅନ୍ୟ ପ୍ରାଣୀଙ୍କ ଉପରେ ନିର୍ଭରଶୀଳ । ଅଧ୍ୟାତ୍ମ ତଥା ବିଜ୍ଞାନ ସିଦ୍ଧାନ୍ତ ଆଧାରରେ ବୃକ୍ଷ ଲତା ଏବଂ ଗୁଳ୍ମ ଆଦି ପ୍ରାଣୀ ଗୋଷ୍ଠୀର ଅନ୍ତର୍ଗତ । ଯାହାର ପ୍ରାଣଶକ୍ତି ଅଛି ସେ ପ୍ରାଣୀ ବା ସଜୀବ । ସୁତରାଂ ଖାଦ୍ୟ ପଦାର୍ଥ ରୂପେ ଏହି ସଜୀବ ପଦାର୍ଥକୁ ଗ୍ରହଣ କରିବା ସମୟରେ ସଂବେଦନଶୀଳ ତଥା ସତର୍କତା ଅବଲଂବନ କରିବା ବିଧେୟ । ପ୍ରାକୃତିକ ନିୟମ ଅନୁସାରେ ପଶୁ, ପକ୍ଷୀ, କୀଟ ପ୍ରଭୃତି ଉଦ୍ଭିଦ ଜଗତ ଉପରେ ନିର୍ଭରଶୀଳ । ସବୁଜ ପନିପରିବା, ଗଛର ପତ୍ର, ଫୁଲ, ଫଳ, ଲତାକୁ ଭିଟାମିନ୍ ଯୁକ୍ତ ଖାଦ୍ୟ ଭାବେ ଗ୍ରହଣ କରିଥାଉଁ । କ୍ଷୀର ବା ଦୁଗ୍ଧଜାତ ପଦାର୍ଥ ପାଇଁ ଆମେ ଗାଈ, ମଇଁଷି, ଛେଳି, ଓଟ ଇତ୍ୟାଦି ପ୍ରାଣୀଙ୍କ ଉପରେ ଯେପରି ନିର୍ଭରଶୀଳ ମହୁ ପାଇଁ ମହୁମାଛି ନିକଟରେ ମଧ୍ୟ କୃତଜ୍ଞ ।

ପ୍ରାକୃତିକ ସଂପଦ ଅପର୍ଯ୍ୟାପ୍ତ ନୁହେଁ । ଇଶୋପନିଷଦ୍‌ରେ ମନୁଷ୍ୟକୁ ପ୍ରାକୃତିକ ସଂବଳର ସୁବିନିଯୋଗ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । 'ତେନ ତ୍ୟକ୍ତେନ ଭୁଂଜିଥା', ଆମେ ତ୍ୟାଗ ପୂର୍ବକ ଅର୍ଥାତ୍ ଅନ୍ୟମାନଙ୍କ ପାଇଁ ତ୍ୟାଗ କରି (ନିଜର ପ୍ରୟୋଜନ ଅନୁସାରେ) ଭୋଗ କରିପାରିବା । ଅନ୍ୟର ପ୍ରାପ୍ୟକୁ ତାକୁ ନଦେଇ ଅର୍ଥାତ୍ ତହିଁରୁ ବଂଚିତ କରି ସବୁକୁ ନିଜ ପାଇଁ ସଂଗ୍ରହ କରିବା 'ଚୋରି' ସଂଗେ ସମାନ ।

୬୯

ଜଗତରେ ସବୁଠାରୁ ବଡ଼ ବନ୍ଧନ ହେଉଛି ମମତା । ମମତା ଏପରି ବସ୍ତୁ ସହ

କରିବା ଉଚିତ ଯେ ଆପଣାର ହୋଇଥିବେ । ଆପଣାର ହେଉଛନ୍ତି ଭଗବାନ୍ । କାରଣ ଏ ଜନ୍ମରେ ଯେଉଁମାନେ ଆପଣଙ୍କର ପୁତ୍ର, କନ୍ୟା, ପତ୍ନୀ, ପିତା, ମାତା ହୋଇଛନ୍ତି ସେମାନଙ୍କ ସହ ସଂବଂଧ ଏହି ଜନ୍ମରେ ହିଁ ହୋଇଛି । ଜୀବନ ଥିଲା ପର୍ଯ୍ୟନ୍ତ ବା ପୂର୍ବରୁ କେତେକଙ୍କ ସହ ସଂବଂଧ ବା ରହିପାରୁଛି ? ଅର୍ଥାତ୍ ସଂବଂଧର କାଳ ଅବଧି କେତେ ରହୁଛି ? ନିଜେ ଭାବି ଦେଖନ୍ତୁ ! ଯାହାଙ୍କ ସହ ସଂବଂଧ ଆମର ଜନ୍ମ ଜନ୍ମର ସେ ହିଁ ଆମର ବନ୍ଧୁ, ସଖା, ପିତାମାତା ଏବଂ ସଂବଂଧୀ । ଆପଣାର ହେଉଛନ୍ତି ଈଶ୍ୱର ବା ଭଗବାନ୍ । ଭଗବାନଙ୍କ ସହ ସଂବଂଧ ହେଲେ କିଛି ଅପୂରଣ ରହେ ନାହିଁ । ପଂଗୁ ଗିରି ଲଂଘିପାରେ । ସୁତରାଂ ତାଙ୍କ ଶରଣ ଗ୍ରହଣ କରିବା ବିଧେୟ । ତାଙ୍କ ଶରଣକୁ ଯିବା ଅର୍ଥ ମୁଖ୍ୟ ଭାବରେ ସଂସାର ତ୍ୟାଗ କରିବା । ଯେ ପରମେଶ୍ୱରଙ୍କ ଶରଣକୁ ଯାଇଛି ତା'ର ଯୋଗ- କ୍ଷେମ ପ୍ରଭୁ ବହନ କରନ୍ତି । ଭଗବାନଙ୍କ ଗୁଣ, ତତ୍ତ୍ୱ, ପ୍ରଭାବ, ରହସ୍ୟକୁ ଜାଣି ନିରନ୍ତର ଚିନ୍ତନ କରିବା ଦ୍ୱାରା ଭଗବାନଙ୍କ ପ୍ରାପ୍ତି ଶୀଘ୍ର ହୋଇଥାଏ । ଯେ ଭଗବାନଙ୍କୁ ଜାଣିଯାଏ ତା'ର ଆଉ କିଛି ଜାଣିବାକୁ, ପାଇବାକୁ ଅବେଶଷ ରହେ ନାହିଁ ।



କୌଣସି କାର୍ଯ୍ୟ ମନୁଷ୍ୟ କରିବା ବେଳେ ତା' ପଛରେ କିଛିନା କିଛି କାରଣ ନିହିତ । କିନ୍ତୁ ବିନା କାରଣରେ, ବିନା ହେତୁରେ କୃପା କରୁଥିବା ପ୍ରଭୁ ନିଜ ତରଫରୁ କୃପାକରି ଜୀବକୁ ମନୁଷ୍ୟ ଶରୀର ପ୍ରଦାନ କରି ଅଛନ୍ତି । କୃପାର ତାତ୍ପର୍ଯ୍ୟ ହେଉଛି ମନୁଷ୍ୟ ନିଜ କଲ୍ୟାଣ କରିନେଉ । ମନୁଷ୍ୟର କଲ୍ୟାଣ ହୋଇଯାଉ- ଏହି ଭାବରେ ଭଗବାନ୍ ମନୁଷ୍ୟ ଶରୀର ଦେଇଛନ୍ତି । ଅତଃ ଭଗବାନଙ୍କ ପକ୍ଷରୁ ତ ତାହାର ଉଦ୍ଧାର ସଂକଳ୍ପ ହୋଇଗଲା । କିନ୍ତୁ ମନୁଷ୍ୟ 'ଏପରି ହେବା ଉଚିତ୍ ଏପରି ହେବା ଅନୁଚିତ' ଏହି କଥାକୁ ଧରି ବସିଛି । ଏଥିପାଇଁ ବନ୍ଧନରେ ପଡ଼ିଯାଇଛି । ଏହାକୁ କାମନା କୁହାଯାଏ ।

ଗୀତାରେ ଯେଉଁ କାମନା ତ୍ୟାଗର କଥା କୁହାଯାଇଛି; ଏହାର ତାତ୍ପର୍ଯ୍ୟ ଏହା ହେଉଛି କି 'ଏପରି ହୋଇ ଯାଉ ଏପରି ନହେଉ' ଏ ଦୁଇଟା ଯାକ ଛାଡ଼ି ଦେବାକୁ ହେବ । ଏହିପରି କାମନା ତ୍ୟାଗ କରିବା ଦ୍ୱାରା ମନୁଷ୍ୟର ସଂସାର ସହ ସଂବଂଧ ରହେ ନାହିଁ ଏବଂ ଭଗବାନଙ୍କ କୃପାରେ ଭଗବାନଙ୍କ ସଂକଳ୍ପରେ ଉଦ୍ଧାର ହୋଇଯିବା ନିଶ୍ଚିତ ।

## ୭୧

ନାମ ରାମକୋ ଅଙ୍କ ହୈ ସବ ସାଧନହୈ ସୁନ ।
ଅଙ୍କ ଗଏଁ କଛୁ ହାତ ନହିଂ ଅଂକ ରହେ ଦଶଗୁନ ।

(ଦୋହାବଳୀ-୧୦)

ଶ୍ରୀରାମଙ୍କ ଭକ୍ତି ସାଧନାର ଗଣନାରେ 'ଶ୍ରୀରାମ ନାମ' ଏକ ଅଂକ (ସଂଖ୍ୟା) (୧) ଏବଂ ଯେତେ ସବୁ ସାଧନା (୦) ଶୂନ୍ୟ- ଅଂକ (ସଂଖ୍ୟା) । ଏବେ ଏହି ଦୁଇ ଅଂକରୁ ଯଦି ଏକ ଅଂକକୁ ବାଦ୍ କରିଦିଆଯାଏ ତେବେ କେବଳ ଶୂନ୍ୟ ହିଁ ହାତରେ ରହିଯିବ ଏବଂ ଯଦି ଏକ ଅଂକକୁ ଶୂନ୍ୟ ପୂର୍ବରୁ ରଖାଯାଏ, ତେବେ ସଂଖ୍ୟା ଦଶଗୁଣ (୧୦) ହୋଇଯିବ । କହିବାର ତାତ୍ପର୍ଯ୍ୟ ହେଉଛି 'ଶ୍ରୀରାମ ନାମ' ଜପରୂପୀ ସାଧନ ଆପଣେଇ ନେଲେ ଭକ୍ତି ସାଧନର ସ୍ତର ଅଥବା ମହତ୍ତ୍ୱ ଦଶଗୁଣ ଶ୍ରେଷ୍ଠ ହୋଇଯିବ ।

ଗୋସ୍ୱାମୀ ତୁଳସୀ ଦାସ ଶ୍ରୀରାମ ନାମର ମହତ୍ତ୍ୱ, ମହିମା ଏବଂ ପ୍ରଭାବକୁ ଏହି ଭାବରେ କରିଛନ୍ତି ।

କହୈଂ କହାଁ ଲଗିନାମ ବଡ଼ାଈ ।
ରାମୁ ନ ସ କହିଂ ନାମ ଗୁନ ଗାଈ ॥

(ରାମଚରିତ ମାନସ. ୧/୨୬/୮)

## ୭୨

ମନୁଷ୍ୟ ଯଦି ନିଜର କଲ୍ୟାଣ ଇଚ୍ଛା କରେ, ତେବେ ଆମେ ମନ, ବଚନ, କର୍ମରେ ପ୍ରଭୁଙ୍କ ନିର୍ଦ୍ଦେଶିତ କଲ୍ୟାଣକାରୀ ମାର୍ଗରେ ଚାଲିବା ଉଚିତ୍ । ନିରନ୍ତର ତାଙ୍କ ଧ୍ୟାନ, ଚିନ୍ତନ ଏବଂ ବେଦ, ଉପନିଷଦ, ବ୍ରହ୍ମସୂତ୍ର ପ୍ରଭୃତି ପଠନ, ପାଠନ ଏବଂ ପ୍ରତିଦିନ 'ନାମଜପ'କୁ ଜୀବନର ଧ୍ୟେୟ କରିବା ଉଚିତ୍ । ଏହାଦ୍ୱାରା ଆମେ ବ୍ୟର୍ଥ କଥାରେ ସମୟ ନଷ୍ଟ କରିବା ନାହିଁ, ନାମ ସ୍ମରଣରେ ହୃଦୟ ଶୁଦ୍ଧ ଓ ନିର୍ମଳ ହେବ ଏବଂ ନଷ୍ଟ ହେବାରୁ ରକ୍ଷା ପାଇଯିବା । ଭଲ ମନ୍ଦରେ ତଫାତ୍ ଜାଣିପାରିବା ।

କେବଳ ଈଶ୍ୱର ହିଁ ଏକମାତ୍ର ଦିବ୍ୟ ଓ ପରମ ସୁନ୍ଦର । ସେ କାହା ସହ

ତୁଳନୀୟ ନୁହଁନ୍ତି । ସେ ଅତୁଳନୀୟ ପରମ ଦୟାଳୁ ଏବଂ ଏହି ଭବ ସାଗରରୁ ପାରି କଲାବାଲା । ରେ ମନ ! ରାମଙ୍କୁ ଭଜନ କର, ନିତ୍ୟ ତାଙ୍କ ଧ୍ୟାନ କର । ସେ ପରମ ପ୍ରିୟ ଅତି ସୁନ୍ଦର ଏବଂ କରୁଣା ସାଗର ।

**୭୩**

୧. ଯଦି ମଧୁର ବାଣୀ କହି ନ ପାରୁଛ ତେବେ କୁହ ନାହିଁ ।

୨. ନିଜର ଖରାପ, ନିନ୍ଦା, ନ ଶୁଣି ପାରୁଛ, ତେବେ ଶୁଣ ନାହିଁ ।

୩. ଯଦି ଆପଣ ଭଲ ଏବଂ କଟୁ ସତ୍ୟ ନ୍ ଦେଖୁଛନ୍ତି ତେବେ ନ ଦେଖନ୍ତୁ ।

୪. ଯଦି ଭଲ ଚିନ୍ତା କରି ନ ପାରୁଛନ୍ତି ତେବେ ନ ଭାବନ୍ତୁ ।

୫. ଯଥା ସଂଭବ ମୌନ ରୁହ । ଆବଶ୍ୟକ ହେଲେ ମିଠା ଶବ୍ଦରେ ନିଜର ଭାବ ବ୍ୟକ୍ତ କର । ଆଗରେ ଥିବା ଲୋକର ମାନସିକତାକୁ ବୁଝିକରି ଭାଷା ପ୍ରକାଶ କର । ପରିଣତ ବୟସରେ ପ୍ରତ୍ୟେକ ଶବ୍ଦକୁ ଅନ୍ୟମାନେ ବହୁ ବିପରୀତ ବୁଝିବାର ସଂଭାବନା ରହିଛି, ସୁତରାଂ ବାଣୀର ସଂଜମ ସୁଖୀ ହେବାର ମୂଳାଧାର ।

୬. ଆଦେଶାତ୍ମକ ଭାଷା ନ କୁହନ୍ତୁ । ମାଗିବା ପ୍ରବୃତ୍ତି ଯଥାସଂଭବ ସୀମିତ କରନ୍ତୁ, ପୂର୍ଣ୍ଣତଃ ତ୍ୟାଗ କରନ୍ତୁ । ଦେହ ଓ ସ୍ୱାସ୍ଥ୍ୟର ଦାୟିତ୍ୱ ପରମ ପିତାଙ୍କ ଉପରେ ଛାଡ଼ି ଦିଅନ୍ତୁ । ସେ ତୁମର ଅପରିହାର୍ଯ୍ୟ ପ୍ରୟୋଜନ ପୂରଣ କରିବେ ।

୭. ଯେବେ ଯାହା ମିଳୁଛି, ଯେତିକି ମିଳୁଛି, ଆଲୋଚନା ନକରି ଈଶ୍ୱରଙ୍କ ଆଶୀର୍ବାଦ ମନେକରି ଗ୍ରହଣ କର । ଭୋଜନରେ ଦୋଷ ବିଚାର କର ନାହିଁ । ଘୃଣା ଦୃଷ୍ଟିରେ ଅମୃତ ବି ବିଷ ହୋଇଯାଏ ।

୮. ନିଜର ଏବଂ ନିଜ କ୍ରିୟାକଳାପକୁ ପାରିବାରିକ ସଦସ୍ୟ ଉପରେ ନ୍ୟୂନତମ ଭାର ଦିଅନ୍ତୁ । ନିଜ ଆବଶ୍ୟକତାକୁ କମାଇ ଦିଅନ୍ତୁ । ଦେଖିବେ ଘରେ ରହି ମଧ୍ୟ ଆପଣଙ୍କୁ ବୈରାଗ୍ୟମୟ ଜୀବନର ଆନନ୍ଦ ପ୍ରାପ୍ତ ହେବ ।

୯. ଉପେକ୍ଷା ଏବଂ ଅପମାନ ଏହି ଦୁଇ ସ୍ଥିତିରେ ଯଥା ସଂଭବ କୌଣସି ପ୍ରତିକ୍ରିୟା ପ୍ରକାଶ କର ନାହିଁ । ମାନ ସମ୍ମାନ ପଛରେ ଧାବିତ ହୁଅନା । ଅହଂକାର (ମୁଁ'ତ୍ୱ)କୁ ପରିହାର କରିବା ଅଭ୍ୟାସ କର । ଭଜନ ଏବଂ ନାମ ଜପ ସକଳ ପ୍ରକାର ଦୁଃଖ, ସଂତାପରୁ ନିସ୍ତାର ଦେବ ।

**୭୪**

ଫୁଲ କଣ୍ଟାଗଛରେ ଫୁଟିଥାଏ, ଖରା ସହ ଖେଳିଥାଏ, ପାଣି ସହ ବଢ଼ିଯାଏ, ପବନ ସହ ହସିଥାଏ । ମାଳୀ ତାକୁ ଛିଡ଼ାଇ ନିଏ, ତେବେ ବି ସେ ତା'ର ସୁଗଂଧ- ସୌରଭ ଛାଡ଼ି ନଥାଏ । ଅନୁରୂପ ଭାବେ ମନୁଷ୍ୟର ଚତୁଃପାର୍ଶ୍ୱରେ ବାଧା ବିଘ୍ନର କଣ୍ଟା ରହିଛି, ଦୁଃଖର ତାପରେ ଉତପ୍ତ ହେଉଛି, ନିରାଶା ଓ ଅଶାନ୍ତିରେ ପରାଜୟକୁ ସ୍ୱୀକାର କରିବାକୁ ହେଉଛି, କିନ୍ତୁ ଯଦି ସେ ଏପରି ସ୍ଥିତିରେ ପୁଷ୍ପ ତୁଲ୍ୟ ହସିବା, ଖେଳିବା ଜାରି ରଖିପାରେ ତେବେ କଷଟୀରେ ସ୍ୱର୍ଣ୍ଣ ତୁଲ୍ୟ ଉଜ୍ଜ୍ୱଳି ଉଠିବ । କାହାରି ହସ ବା ରୋଷର ସଂସାର ଚକ୍ର ରୋଧ ହୁଏ ନାହିଁ । ଯେପରି ଜନ୍ମ ସହିତ ମୃତ୍ୟୁ ବଂଧା ହୋଇଛି ସେହିପରି ଦୁଃଖ ସହ ସୁଖ, ହାରିବା ସହ ଜିତିବା, ନିରାଶା ସହ ଆଶା ସୁନିଶ୍ଚିତ ।

ହସିହସି ରୁହ, କାନ୍ଦିକାନ୍ଦି ଯଦି ସଂସାରରେ ରହିବ ତେବେ କିଛି ସହିବାକୁ ପଡ଼ିବ, ଅତଃ ସଫଳତା ଏବଂ ବାହାଦୁରୀ ଏଥିରେ ରହିଛି କି ହସିହସି କଷ୍ଟର ସମ୍ମୁଖୀନ ହୁଅ ।

**୭୫**

ଆମ ଜୀବନରେ ଇଚ୍ଛା ଅନନ୍ତ, ଏହାର କୌଣସି ଅନ୍ତ ନାହିଁ । ଏହାର ପୂର୍ତ୍ତି ଯେତିକି ହୋଇଥାଏ, ତାହା ଆହୁରି ବୃଦ୍ଧି ପାଇଥାଏ । ଏହାର ସଂତୁଷ୍ଟି ଅଗ୍ନିରେ ଘିଅ ଢାଳିବା କାର୍ଯ୍ୟ ପରି । ଏହାର ସଂତୁଷ୍ଟିରେ କ୍ଷଣିକ ଭୌତିକ ସୁଖର ଭ୍ରମ ସୃଷ୍ଟି ହୋଇଥାଏ । କିନ୍ତୁ ଜୀବନରେ ଅପ୍ରାପ୍ତିର ଜ୍ୱାଳା ବୃଦ୍ଧି ହୋଇଥାଏ । ବାସ୍ତବ ଶାନ୍ତି ଭୋଗରେ ବା ଭୋଗ ଇଚ୍ଛାରେ ନଥାଇ ପାରେ, ଏହା ଉପରେ ସଂଜମର ପ୍ରୟୋଜନ । କାରଣ

'ପଡ଼ିଲେ ଆହୁତି ଆନନ୍ଦ ଗରଭେ,
ନଲିଭି ତା' ପୁଣି ଦାଉ ଦାଉ ଜଳେ ।'

ଅପେକ୍ଷା ବ୍ୟକ୍ତିକୁ ଭିକାରୀ କରିଦିଏ । ହୀନ କରିଦିଏ । ବ୍ୟକ୍ତିର ଆତ୍ମସମ୍ମାନର ବୋଧ ରହେ ନାହିଁ । ଏହା ହେଉଛି ଅପେକ୍ଷା, ଯାହା ସାମାଜିକ ତଥା ପାରିବାରିକ ସଂବଂଧରେ ଭେଦ କରିଦିଏ । ପରିବାରର ବିଘଟନ ଅପେକ୍ଷାକୁ ନେଇ ହୋଇଥାଏ । ଜ୍ୟେଷ୍ଠଙ୍କ ମାନ ସମ୍ମାନ, ଘରର ସୁଖ ଶାନ୍ତି ସମସ୍ତ ନଷ୍ଟ

ହୋଇଯାଏ । ଏପରିକି ମକଦ୍ଦମା ଓ ଆଘାତ, କ୍ଷତବିକ୍ଷତ ପର୍ଯ୍ୟନ୍ତ ଅପେକ୍ଷାକୁ ନେଇ ହୋଇଥାଏ ।

ସାଧାରଣତଃ ବ୍ୟକ୍ତି ଅହଂବାଦୀ ହୋଇଥାଏ । ନିଜ ସଂପର୍କରେ ଆସୁଥିବା ବ୍ୟକ୍ତି ସଖା ସଂବଂଧୀ, ମିତ୍ର ତଥା ପରିବାରଙ୍କଠାରୁ ନିଜ ଅହଂ ତୁଷ୍ଟିର ଅପେକ୍ଷା ରଖିଥାଏ । ସେ ଚାହିଁଥାଏ କି ଅନ୍ୟମାନେ ତାକୁ ସମ୍ମାନ କରନ୍ତୁ । ଏହି ମାନ, ବଡ଼ପଣର ଇଚ୍ଛା, ଲୋକୈଷଣା ହିଁ ଅଶାନ୍ତିର ମୂଳକାରଣ । ଗୀତାର ପ୍ରମୁଖ ସଂଦେଶ ହେଉଛି ମନୁଷ୍ୟ ନିଜ ସ୍ୱାଭାବିକ କର୍ମଫଳକୁ ଅପେକ୍ଷା ନରଖି କରନ୍ତୁ । ଏଥିରେ ସଫଳ, ବିଫଳର ଅନୁଭୂତି ପୀଡ଼ା ଦେବ ନାହିଁ । ଏହା ଦ୍ୱାରା ଅକଳ୍ପନୀୟ ସଂତୋଷର ଅନୁଭୂତି ହୋଇଥାଏ । ଏହା ମଧ୍ୟ ବାସ୍ତବ ସେବା ଏବଂ ଆରାଧନା ।

୨୬

ମାନବ ଜୀବନ କୌଣସି କର୍ମର ଫଳ ନୁହେଁ; ବରଂ ଅନନ୍ତଙ୍କ କୃପା ଶକ୍ତିରେ ସୃଷ୍ଟ । ଏ ଜୀବନର ଆରମ୍ଭ କୌଣସି ଉଦାରତା ନିହିତ । ଏକତ୍ର ହୋଇଥିବା ବସ୍ତୁକୁ ଆପଣାର ମାନି ବ୍ୟକ୍ତି ଦୀନତା ତଥା ଅଭିମାନର ଅଗ୍ନିରେ ଦଗ୍ଧ ହେଉଅଛି ।

ନିଜ ଭିତରେ ଯେ ପର୍ଯ୍ୟନ୍ତ ଦୀନତା ଏବଂ ଅଭିମାନ ରହିଛି ସେ ଯାବତ୍ ପ୍ରଭୁଙ୍କଠାରେ ବିଶ୍ୱାସ ହୁଏ ନାହିଁ । ଦୀନତା ଏବଂ ଅଭିମାନ ତୁଟି ଗଲେ କୌଣସି ବସ୍ତୁକୁ ଆପଣାର ସ୍ୱୀକାର ନକରିବା ବିଚାରଶୀଳ ସାଧକ, ପ୍ରଭୁ ବିଶ୍ୱାସୀ ସାଧକ ଓ ଭୌତିକ ଦର୍ଶନର ଜ୍ଞାତା ଯେ ତିନିବର୍ଗ କୌଣସି ବସ୍ତୁକୁ ନିଜର ମାନନ୍ତି ନାହିଁ ।

ଏହା ଦେଇଥିବା ପ୍ରଭୁଙ୍କ ଦୟାଳୁତା କି ତାଙ୍କ ସମ୍ମୁଖରେ ବ୍ୟକ୍ତି ତାଙ୍କ ପ୍ରଦତ୍ତ ବସ୍ତୁର ଦୁରୁପଯୋଗ କରିଥାନ୍ତି । ପୁନଃ ବସ୍ତୁ ଦେବା ବଂଦ କରିଦିଅନ୍ତି । ଏପରି କୃପାଳୁ ପ୍ରଭୁଙ୍କୁ ଆମେ ନିଜର ମାନିପାରୁ ନାହିଁ, ଏହା କେତେ ଦୁଃଖ ସତେ !

ଯଦି ଆପଣଙ୍କ ପାଖରେ ନିଜର କିଛି ରହିଛି, ତେବେ ଆପଣ ଭଗବାନଙ୍କୁ ଆପଣାର କରିପାରୁ ନାହାଁନ୍ତି । ଯଦି ଆପଣଙ୍କ ନିକଟରେ କିଛି ନାହିଁ ତେବେ ଭଗବାନଙ୍କୁ ଆପଣାର କହି ପାରିବେ ଏବଂ ଏହା ଜୀବନର ସତ୍ୟ ।

(ଶ୍ରୀ ଶରଣାନନ୍ଦଜୀ ମହାରାଜ)

୭୭

ମନୁଷ୍ୟ ମଧ୍ୟରେ ଦେହକୁ ଜୀବିତ ରଖୁଥିବା ତତ୍ତ୍ୱକୁ 'ଦେବ' 'ଆତ୍ମା' କୁହାଯାଏ । ଏହା ସବୁଠାରୁ ନିର୍ଲିପ୍ତ (ତୃଷ୍ଣା ଏବଂ ବିକାର ରହିତ) ରହି ଦେହ ମଧ୍ୟରେ ସ୍ଥିତ । ନିଜ ମାୟା ଶକ୍ତିଦ୍ୱାରା ସବୁ କାର୍ଯ୍ୟ କରିଥାନ୍ତି । ଏବେ ସେହି ଦେବଙ୍କର ଧ୍ୟାନ କର ଏବଂ ଧ୍ୟାନ ଦ୍ୱାରା ତାଙ୍କୁ ସାକ୍ଷାତ୍‌କାର କର । ଏହି ଧ୍ୟାନ ସେହି କରିପାରିବ, ଯେ ବାହ୍ୟ ଉଦ୍‌ବେଳନରୁ ମୁକ୍ତ ହୋଇପାରିବ । କାରଣ ଯେବେ ଧ୍ୟାନ ପାଇଁ ବସିଯାଆନ୍ତି ଏକାକୀ ମନରେ ଆନ୍ଦୋଳନ, କାହାରି ପ୍ରତି ରାଗ, କାହାରିକୁ ଦ୍ୱେଷ, କେଉଁଠି ସଂଶୟ କାହିଁବା ବୈରଭାବ ସବୁ ଆସିଥାନ୍ତି । ଏ ସ୍ଥିତିରେ ମନକୁ ବୁଝାଇ ଏ ସବୁକୁ ଟାଳି ଦିଆଯାଇପାରେ । ଏପରି ଅଭ୍ୟାସ କରୁକରୁ ତୁମର କର୍ମ ସ୍ୱାଭାବିକ ହୋଇଯିବ- ଏହା ଧର୍ମ ଗ୍ରନ୍ଥର ବାଣୀ । ଏହାର ତାତ୍ପର୍ଯ୍ୟ ଏହିକି ତୁମର କର୍ମ ଫଳ ରହିତ ହୋଇଯିବ । ଏହାପରେ ଯେବେ ତୁମେ ଏକାକୀ ହୋଇଯିବ, ସ୍ୱେହି ଆତ୍ମାକୁ ଦେଖିବା ଆରମ୍ଭ କରିଦେବ । ଏବେ ଏହିପରି ନିଜ ଆତ୍ମାକୁ କେବଳ ଦେଖି ରହିଲେ ଧୀରେଧୀରେ ସମଗ୍ର ଦୃଷ୍ଟି ରାଗ, ଦ୍ୱେଷ, ସଂଶୟ, କାମ-କ୍ରୋଧାଦି ଯେତେ ବିକାର ରୂପୀ ବନ୍ଧନ ରହିଛି ସବୁ ଜାଣି ହୋଇଯିବ । ଏହାକୁ 'ମନ ଜାଣିବା' କୁହାଯାଏ । ମନକୁ ଯଦି ଜାଣିବା ହୋଇଗଲା, ତେବେ ମନୁଷ୍ୟ କୃତକୃତ୍ୟ ହୋଇଯାଏ । (ଶ୍ରୀ ଦୟାନନ୍ଦଗିରି ମହାରାଜ)

୭୮

ବଡ଼ ବିଡ଼ମ୍ବନାର କଥା ଯେ ଭୋଗ କାରଣରୁ ବାରମ୍ବାର ଦୁଃଖ ପାଇଲେ ମଧ୍ୟ ଆମ ପ୍ରବୃତ୍ତି ଭୋଗ ଦିଗକୁ ପ୍ରଧାବିତ ହେଉଛି । ଭୋଗରୁ ସୁଖ ମିଳିବାର ଭ୍ରମ ନାଶ ହେଉ ନାହିଁ । ବଡ଼ବଡ଼ ବିଦ୍ୱାନ, ଶାସ୍ତ୍ରଜ୍ଞ ପଣ୍ଡିତ, ସଂସାରର ଅସାରତା ବିବେଚନ କରୁଥିବା ଏବଂ ଭୋଗ ନିନ୍ଦା କରୁଥିବା ପୁରୁଷ ମଧ୍ୟ ନିଜ ଜୀବନରେ ଭୋଗରେ ନିଜ ଜୀବନକୁ ଆପ୍ଳୁତ କରୁଅଛନ୍ତି । ଏଥିରୁ ଜଣାଯାଉଛି ଯେ ଭୋଗାସକ୍ତିରୁ ନିସ୍ତାର ପାଇବା ଏତେ ସରଳ ନୁହେଁ । ଯେଉଁ ବ୍ୟକ୍ତିର ଭୋଗାସକ୍ତି କ୍ଷୀଣ ହୋଇଯାଇଛି, ତା' ଉପରେ ଭଗବାନଙ୍କ ପ୍ରତ୍ୟକ୍ଷ କୃପାରୁ ଅନୁଭବ କରିବା ଉଚିତ୍ । ଭୋଗାସକ୍ତି ଅତ୍ୟନ୍ତ କ୍ଷୀଣ ହୋଇଯିବା ପରେ ସାଧନା ତୀବ୍ରତର ହୁଏ । ସାଧନ ସମାଗ୍ରୀର ହ୍ରାସ ବସ୍ତୁତଃ କୌଣସି କମ୍ ନୁହେଁ । ଭଗବତ୍ ପ୍ରାପ୍ତି ପାଇଁ

ସୁଦୃଢ଼ ଲକ୍ଷ୍ୟର ଉଣା ବାସ୍ତବିକ କମ୍ । ଯେ ଯାବତ ଭୋଗଶକ୍ତି ରହିଛି, ସେ ଯାବତ୍ ସୁଦୃଢ଼ ଲକ୍ଷ୍ୟ ହୋଇପାରି ନଥାଏ (ଗୀତା ୨/୪୪) । କଥିତ ଉକ୍ତି ଅନୁସାରେ ଏହି ପୁଷ୍ପିତ ବାଣୀରେ ଯାହାର ଅନ୍ତଃକରଣ ହରଣ କରିନେଇଛି ଅର୍ଥାତ୍ ଭୋଗ ଦିଗକୁ ଆକର୍ଷିତ ଏବଂ ଯେ ଭୋଗ ତଥା ଐଶ୍ୱର୍ଯ୍ୟରେ ଅତ୍ୟନ୍ତ ଆସକ୍ତ ସେହି ବ୍ୟକ୍ତିର ପରମାତ୍ମାଙ୍କ ଠାରେ ନିଶ୍ଚୟାତ୍ମିକା ବୁଦ୍ଧି ହୁଏ ନାହିଁ ।

୭୯

ଇନ୍ଦ୍ରିୟ ଦ୍ୱାରା ବିଷୟକୁ ଗ୍ରହଣ ନ କରୁଥିବା ପୁରୁଷକୁ ମଧ୍ୟ କେବଳ ବିଷୟରତ ନିବୃତ୍ତ ହୋଇ ଯାଇଥାଏ, କିନ୍ତୁ ତହିଁରେ ରହିଥିବା ଆସକ୍ତି ନିବୃତ୍ତ ହୁଏ ନାହିଁ । 'କର୍ମେନ୍ଦ୍ରିୟାଣି ସଂଜମ୍ୟ ଯଆସ୍ତେ ମନସା....' ପ୍ରଭୃତି ବାକ୍ୟ ଏ ସଂବଂଧରେ କଥିତ । ଏହି ବ୍ୟକ୍ତିର ଆସକ୍ତି ମଧ୍ୟ ପରମାତ୍ମା ସାକ୍ଷାତ୍କାରରୁ ନିବୃତ୍ତ ହୋଇଥାଏ ।

ଭୋଗାଶକ୍ତି ନାଶର ସର୍ବୋତ୍ତମ ଉପାୟ ଭଗବାନଙ୍କୁ ଯଥା ସଂଭବ ନିଷ୍ଠାର ସହ ଭଜନ କରିବା । ଭଗବାନ୍ନାମକୁ ନିରନ୍ତର ଜପର ଯେପରି ପରିଣାମ ହୋଇଥାଏ, ତାହା ଅନ୍ୟ କୌଣସି ସାଧନ ଦ୍ୱାରା ହୋଇପାରି ନଥାଏ । ମନ ଲାଗୁ ବା ନ ଲାଗୁ, ନିରନ୍ତର ନାମ ଜପ କରିଚାଲ । ଅତି ଉଚ୍ଚକୋଟୀର ସାଧୁ ସଂଥଙ୍କର ମଧ୍ୟ ଏହି ଅନୁଭୂତି । ଦେବର୍ଷି ନାରଦ ଏହାର ସମର୍ଥନ କରିଅଛନ୍ତି- 'ଅବ୍ୟାବୃତ ଭଜନାତ୍' (ନାରଦ ଭକ୍ତି ସୂତ୍ର) ।

ଭୋଗାସକ୍ତିରୁ ନିଷ୍କୃତି ପାଇବା ପାଇଁ ଦ୍ୱିତୀୟ ମହତ୍ତ୍ୱ ପୂର୍ଣ୍ଣ ସାଧନ 'ବିଚାର' । ଭୋଗର ଦୁଃଖମୟତା ଏବଂ ନାଶବତ୍ତା ସଂବଂଧରେ ବାରବାର ବିଚାର କରିବା ଦ୍ୱାରା ଭୋଗରୁ ବୈରାଗ୍ୟ ହୋଇଥାଏ ।

ସଂସାର ଦୀର୍ଘ ରୋଗସ୍ୟ ସୁବିଚାରଃ ମହୌଷଧଃ
କୋଽହଂ କସ୍ୟ ଚ ସଂସାରଃ ବିଚାରେଣ ଵିଲୀୟତେ ।

ସଂସାରର ସଂପୂର୍ଣ୍ଣ ଭୋଗ ଦେଶ କାଳ ଓ ବସ୍ତୁରୁ ଅଳ୍ପ । ଅଳ୍ପରେ କେବେ ମଧ୍ୟ ସୁଖ ନାହିଁ- 'ନାଳ୍ପେସୁଖମସ୍ତି' ।

୮୦

ଧନ ଉପାର୍ଜନ କରିବାରେ, ଉପାର୍ଜନ ପରେ ତାକୁ ବଢ଼ାଇବାରେ, ରକ୍ଷା କରିବାରେ

ଏବଂ ଖର୍ଚ୍ଚ କରିବାରେ ତଥା ଏହାର ନାଶ ଏବଂ ଉପଭୋଗରେ ଯେଉଁଠି ଦେଖ, ସବୁଠି ନିରନ୍ତର ପରିଶ୍ରମ, ଭୟ, ଚିନ୍ତା ଓ ଭ୍ରମର ହିଁ ସମ୍ମୁଖୀନ ହେବାକୁ ହୋଇଥାଏ । ଚୋରି, ହିଂସା, ମିଥ୍ୟା ଭାଷଣ, ଦମ୍ଭ, କାମ, କ୍ରୋଧ, ଗର୍ବ, ଅହଂକାର ଭେଦବୁଦ୍ଧି, ବୈରଭାବ, ଅବିଶ୍ୱାସ, ସ୍ପର୍ଦ୍ଧା, ଲମ୍ପଟତା, ଜୁଆ ଏବଂ ମଦ୍ୟ- ଏ ପନ୍ଦର ଗୋଟି ଅନର୍ଥ ମନୁଷ୍ୟଠାରେ ଧନ ସୃଷ୍ଟି ସହିତ ହିଁ ସୃଷ୍ଟି ହୋଇଥାଏ । ଏଣୁ କଲ୍ୟାଣ କାମୀ ମନୁଷ୍ୟ ଏହି ସ୍ୱାର୍ଥ- ପରମାର୍ଥ ବିରୋଧୀ ଅର୍ଥ ନାମଧାରୀ ଅନର୍ଥକୁ ଦୂରରୁ ତ୍ୟାଗ କର । (ଭାଗବତ ୧୧/୨୩/୧୭-୧୯)

ଭୋଗର ଅନ୍ୟ ଦୁର୍ଭେଦ୍ୟ ଘାଟୀ ହେଉଛି ନାରୀ । ଏହି କଥାକୁ ଗଣ୍ଠିକରି ରଖିଥାନ୍ତି ଯେ ଯେବେ ଭଗବତ୍ ଦିଗକୁ ଅଗ୍ରସର ହେଉଛନ୍ତି ନାରୀ ସବୁଠାରୁ ଅଧିକ ବାଧକ । ଭଗବାନ୍ ଧର୍ମାବିରୁଦ୍ଧ କାମକୁ ଆପଣା ସ୍ୱରୂପ ମାନିଛନ୍ତି । 'ଧର୍ମା ବିରୁଦ୍ଧୋ ଭୂତେଷୁ କାମୋଽସ୍ମି ଭରତର୍ଷଭ' (ଗୀତା ୭/୧୧) । କିନ୍ତୁ ଏକଥା ସଂସାର ବ୍ୟବହାର ଚାଲିବା ପାଇଁ ହୋଇଛି ।

× × ×

ନାରୀର ଶରୀର ସୌନ୍ଦର୍ଯ୍ୟର ଆଭାସ କେବଳ ମୋହ କାରଣରୁ ହିଁ ହୋଇଥାଏ । ନାରୀ ସଂଗଦ୍ୱାରା ଓ ନାରୀ ପ୍ରେମୀଙ୍କ ସଂଗ ଦ୍ୱାରା ଯେଉଁ ବନ୍ଧନ ପତନ ହୁଏ ସେପରି ବନ୍ଧନ ଓ ପତନ ଅନ୍ୟ କୌଣସି ସଂଗରେ ହୋଇ ନଥାଏ ।

ନାରୀ ସାଧକା/ ସାଧିକାଙ୍କ ପାଇଁ ଏହି କଥା ପୁରୁଷ ପ୍ରତି ବୁଝିବା ଉଚିତ୍ ହେବ ।

**୮୧**

ଧନ, ବଳ, ପଦ, ଅଧିକାରୀ, ଜ୍ଞାନ, ଐଶ୍ୱର୍ଯ୍ୟ, ସାଧନା ଏବଂ ପରୋପକାର ଇତ୍ୟାଦିରୁ ଗୋଟିଏର ଅହଂକାର ଅଧଃ ପତନ ସ୍ତରକୁ ଘେନିଯିବାକୁ ଯଥେଷ୍ଟ । ବିନମ୍ରତା ଏବଂ ଭଗବତ୍ ସମର୍ପଣ ପୂର୍ବକ ଏହାର ବ୍ୟବହାର ଜୀବନରେ ସଦୁପଯୋଗ କରିବା ଦ୍ୱାରା ଉତ୍ଥାନ, ଭଗବତ୍ ସାମୀପ୍ୟ ଏବଂ ଭଗବତ୍ କୃପାର ଉପଲବ୍ଧି ହୋଇଥାଏ । ଧୀରେ ଧୀରେ ପ୍ରେମର ଅଭିବୃଦ୍ଧି ହେବାକୁ ଲାଗେ । ଭଗବତ୍ ପ୍ରେମ ଆଧିକ୍ୟ ହେତୁ ପ୍ରେମୀ ଭକ୍ତ ଯେବେ ନିକଟରେ ଭଗବାନ୍‌ଙ୍କ ରୂପ, ଗୁଣ, ସ୍ୱଭାବ, ପ୍ରଭାବ କ୍ଷେତ୍ର ପ୍ରସ୍ତୁତ କାରଣରୁ ଲୋମ ପୁଲକିତ ହୋଇଥାଏ ।

ସମାନ ସ୍ଥିତିରେ ଭୋଗୀ, ଭୋଗବାସନା ଲିପ୍ତ ମାନସିକତାଠାରେ କୌଣସି ସାତ୍ତ୍ୱିକ ବିକାର ଦେଖାଯାଏ ନାହିଁ । କେବେ ପୂର୍ବୋକ୍ତ ସାଧକଙ୍କ ନେତ୍ର ଅଶ୍ରୁ ସଜଳ ହୋଇଯାଏ । ପ୍ରେମମୟୀ ଭକ୍ତି ଦ୍ୱାରା ନିଜ ବଂଶ ତଥା ପୃଥିବୀକୁ ଧନ୍ୟ କରିଥିବା ଭକ୍ତର ପ୍ରଭୁ ନାମ ସ୍ମରଣ କୀର୍ତ୍ତନ ଆଦି ସମୟରେ କେବେ କଣ୍ଠରୋଧ ମଧ୍ୟ ହୋଇଥାଏ । ସେ କେବେ ପ୍ରଭୁ ବିୟୋଗ ତଥା ପ୍ରଭୁ ସାମୀପ୍ୟ ଅନୁଭବ କରିଥାଏ । କେବେ ଭଗବାନଙ୍କ ସେବାର ଆକାଂକ୍ଷା ରଖିଥାଏ ।

କବହୁଁ ନୈନ ନୀର ନ ସକୈ କହି ଭରପୀର,
ଦୂରି ଜାନି ପ୍ରତୀମ ନ ଧୀରଜ ଧରୟୋ କରୌ ।
× × × × × ×
'ମହେଶ୍ୱରାନନ୍ଦ' ନିଜ ମୁଖ ହରିହୁ ସରା ହେଂ ତାହି
ଅହଂକୋ ନ ଲେଶ ପ୍ରିୟ ସେବାହୀ ସଦା ଚହୈ ॥

୮୨

ମୋତେ ତ ସତ୍‌ସଂଗରୁ ଲାଭ ମିଳିଛି । ମୁଁ ସାଧନରୁ ସତ୍‌ସଂଗକୁ ଅଧିକ ମହତ୍ତ୍ୱ ଦେଉଛି, କାରଣ ମୋତେ ବିଶେଷ ଲାଭ ପୁସ୍ତକ ପାଠ ଏବଂ ସତ୍‌ସଂଗରୁ ପ୍ରାପ୍ତ ହୋଇଛି । ଅନ୍ୟମାନଙ୍କ ପାଇଁ ଏହି ବିଧାନ ମଧ୍ୟ ପ୍ରଯୁକ୍ତ ହେବ । ସେମାନେ ଯଦି ମନ ଲଗାଇ, ଗଭୀରତାକୁ ଯାଇ ସତ୍‌ସଂଗର ବାଣୀ ବୁଝିବେ, ବହୁତ ଲାଭାନ୍ୱିତ ହେବେ ।

ଆଉ ଗୋଟିଏ ବିଶେଷ କଥା ଅଛି, ମୋତେ ଯେତେ ବର୍ଷ ଲାଗିଲା ଆପଣଙ୍କୁ ସେତେ ବର୍ଷ ଲାଗିବ ନାହିଁ । ଆପଣଙ୍କ ତଜ୍ଜନିତ ଅସୁବିଧା ମୋତେ ଜଣାଅଛି । ଯଦି ଆପଣ ସତ୍‌ସଂଗକୁ ମହତ୍ତ୍ୱ ଦେବେ ଏବଂ ଗଭୀରତା ସହକାରେ ମନନ କରିବେ ଖୁବ୍ ଶୀଘ୍ର ଆପଣଙ୍କର ଉନ୍ନତ ଘଟିବ । ମୋତେ ଏହା ସ୍ପଷ୍ଟ ଦେଖାଯାଉଛି ।

ମୁଁ ଆପଣଙ୍କୁ ଅନଧିକାରୀ ଭାବୁ ନାହିଁ । ଆପଣଙ୍କଠାରେ ନ୍ୟୂନତା ରହିଅଛି, କିନ୍ତୁ ନ୍ୟୂନତାକୁ ଦୂର କରିବାର ସାମର୍ଥ୍ୟ ଆପଣଙ୍କର ପୂରା ଅଛି । ମୋ' ବିଚାରରେ ଆପଣଙ୍କର ଏ ବିଷୟରେ କେବଳ ଉତ୍କଣ୍ଠାର ଅଭାବ ରହିଛି । ଯଦି ଉତ୍କଣ୍ଠା ଜାଗ୍ରତ ହୋଇଯାଏ ତେବେ ପାପୀଷ୍ଠ, ମୂର୍ଖ, କାହା ପାଖରେ

ଯେତେ କମ୍ ସମୟ ଥିଲେ ମଧ୍ୟ ତା'ର ଉଦ୍ଧାର ହୋଇ ପାରିବ । ଉକ୍ରଣ୍ଠା ଜାଗ୍ରତ କରିବା ପାଇଁ, ସାଂସାରିକ ଭୋଗ ପାଇବା ପାଇଁ, ଭିତରୁ ଯେଉଁ ଲାଳସା ତାକୁ କୃପା କରି ଛାଡ଼ିଦିଅନ୍ତୁ ।

କବୀର ମନବା ଏକହେି ଭାବେ ଜହାଁ ଲଗାୟ ।
ଭାବେ ହରିକୀ ଭକ୍ତି କର, ଭାବେ ବିଷୟ କମାୟେ ।

(ସ୍ୱାମୀ ରାମସୁଖ ଦାସଜୀ ମହାରାଜ)

୮୩

ସଂଗ୍ରହ ଏବଂ ଭୋଗ ମଧ୍ୟରେ ଯେଉଁ ସଂପୃକ୍ତି ରହିଛି, ତାକୁ ସମାପ୍ତ କରି ଦିଅନ୍ତୁ । ଅର୍ଥାତ୍ ଏତେ ଟଙ୍କା ହୋଇଗଲା, ଆହୁରି ହୋଇଯାଉ, ଏତେ ଭୋଗ କରିବି, ଏପରି ଆରାମ କରିବି, ସମ୍ମାନ ମିଳିଯାଉ, ବଡ଼ପଣ ମିଳିଯାଉ, ନିରୋଗତା ମିଳିଯାଉ, ସମାଜରେ ମୋର ନିର୍ଦ୍ଧାରିତ ସ୍ଥାନ ମିଳିଯାଉ, ଏ ସବୁ ଯେତେ ଇଚ୍ଛା ସେ ସକଳ ତ୍ୟାଗ କରିଦିଅନ୍ତୁ । ବାସ୍, ପୁନଃ ଆପଣଙ୍କ ପରମାତ୍ମା ପ୍ରାପ୍ତିର ଶୁଭବେଳା ଆପେ ଆପେ ଆସିଯିବ । ଆପଣ ଏବେ କହିବେ ଯେ, ମୋର ଯେତେ ସଂପୃକ୍ତି ଇଚ୍ଛା କରୁଛି, ସେତେଟା ସଂପୃକ୍ତି ନାହିଁ । ଆରେ ଭାଇ ! ଯେତିକି ତ୍ୟାଗ ହେବା କଥା ସେତିକି ହୋଇ ନାହିଁ । ମନରେ ତ୍ୟାଗ ହିଁ ନାହିଁ । ତ୍ୟାଗ କ'ଣ ? ଗୀତାରେ ଭଗବାନ୍ ବିଭିନ୍ନ ସ୍ଥାନରେ ଇଚ୍ଛା ତ୍ୟାଗର କଥା କହିଛନ୍ତି । ଇଚ୍ଛା କ'ଣ ? ଏହା ହେବା ଦରକାର ଏବଂ ଏହା ନହେବା ଉଚିତ୍ । ଏହା ହିଁ ଇଚ୍ଛାର ସ୍ୱରୂପ । ଏହାକୁ ତ୍ୟାଗ କରିଦେଲେ ତ କେତେ ମହାନ୍ ଲାଭ ହେବ । ଗୀତା କହନ୍ତି କି, ଯେଉଁ ବ୍ୟକ୍ତି ସଂପୂର୍ଣ୍ଣ ଇଚ୍ଛାର ତ୍ୟାଗ କରିଦିଏ, ସେ ହେଉଛି ସ୍ଥିତପ୍ରଜ୍ଞ । ଅର୍ଥାତ୍ ଭଗବତ୍ ପ୍ରାପ୍ତ ପୁରୁଷ ।

(ସ୍ୱାମୀ ରାମସୁଖ ଦାସଜୀ ମହାରାଜ)

୮୪

ସାଧକଙ୍କ ମାର୍ଗରେ ବିଘ୍ନ ସୃଷ୍ଟି କରୁଥିବା ଭୋଗର ତିନିଗୋଟି ସ୍ୱରୂପ ଅତ୍ୟନ୍ତ ମୋହ କାରକ । ଧନ, ନାରୀ, ମାନ– ସମ୍ମାନ ଓ ପ୍ରତିଷ୍ଠା । ଏଗୁଡ଼ିକ ଉତ୍ତରୋତ୍ତର ବଳବାନ୍ । ସାଂସାରିକ ବ୍ୟବହାରରେ ଆବଶ୍ୟକତା ହେବାପରେ ଏହାର ଭୋଗ ରୂପ ତ୍ୟାଜ୍ୟ । ଟଙ୍କାର ଆସକ୍ତି ତଥା ଲୋଭରେ ସକଳ ପ୍ରକାର ପାପ ଅନର୍ଥ

ହୋଇଥାଏ । ଅତଃ ଶାସ୍ତ୍ରରେ ଏହାର ନିନ୍ଦା କରାଯାଇଛି । 'ଧିଗର୍ଥ ମନର୍ଥ ଭାଜନାମ୍' । ବାସ୍ତବ ସାଧକ ପାଇଁ ଭଗବାନଙ୍କ ସମ୍ମୁଖରେ ଧନ ସଂପତ୍ତି କ'ଣ ମୁକ୍ତିର ମୂଲ୍ୟ ତୁଚ୍ଛ । ସେହି ଭଗବତ୍ ପ୍ରେମ ପାଇଁ ଧନ ସଂପତ୍ତିକୁ ବମନ ତୁଲ୍ୟ ଛାଡ଼ି ହେବା ଉଚିତ୍ ।

ରମା ବିଳାସୁ ରାମ ଅନୁରାଗୀ । ତନଜ ବମନ ଜିମି ଜନ ବଡ଼ଭାଗୀ ।

ଟଂକାର ପ୍ରାଚୁର୍ଯ୍ୟରେ ମନୁଷ୍ୟ ସୁଖୀ ହୋଇ ନଥାଏ ଏବଂ ଟଂକାରେ ଶାନ୍ତି ମିଳି ନଥାଏ । କୌଣସି ଧନପତିଙ୍କୁ ପଚାରି ତାଙ୍କ ସ୍ଥିତି ଦେଖି ଟଙ୍କାରୁ ସୁଖୀ ହେବାର ଭ୍ରମ ନିବାରଣ କରାଯାଇପାରେ । ଅତଃ ଟଂକା ଅଧିକ ହେବା ଭାଗ୍ୟଶାଳୀର କୌଣସି ସଂକେତ ନୁହେଁ, ଉତ୍ତମ ବ୍ୟକ୍ତିର ମଧ୍ୟ ଲକ୍ଷଣ ନୁହେଁ । ପ୍ରାଚୁର୍ଯ୍ୟର ଆଧିକ୍ୟରୁ ନିଜକୁ ବଡ଼ ସୁଖୀ ଭାବିବା କେବଳ ମୂଢ଼ତା ।



ଅମୂଲ୍ୟ ସମୟ-

ମନୁଷ୍ୟ ଜୀବନର ପ୍ରତ୍ୟେକ କ୍ଷଣ ଅମୂଲ୍ୟ । ସମୟ ଏପରି ଧନ ଯେ ବହିଯିବା ପରେ ଲେଉଟି ଆସେ ନାହିଁ । ବିବେକୀ ପୁରୁଷ ସମୟବଦ୍ଧତା ଦିଗରେ ସଦା ଧ୍ୟାନ ରଖିଥାନ୍ତି ।

ଛାତ୍ର ଜୀବନରେ ସମୟର ସୁବିନିଯୋଗ କରି ନଥିବାରୁ କର୍ମମୟ ଜୀବନରେ ଓ ଅବସର ଗ୍ରହଣ ପରେ ମଧ୍ୟ ପଶ୍ଚାତାପ ହୋଇଥାଏ । ପୁନଃ କର୍ମମୟ ଜୀବନରେ ଯଦି ଆପଣ ଠକାମୀର ଆଶ୍ରୟ ନେଇଛନ୍ତି, ତେବେ ଅବସର ସମୟରେ ତଜ୍ଜନିତ ପଶ୍ଚାତାପ ଆପଣଙ୍କ ସହଚର ହେବ । ମର୍ମଦାହୀ ହେବାକୁ ବାଧ୍ୟ । ଏବେ ଯଦି ଅବସର ସମୟର ସଦ୍‌ବିନିଯୋଗ ନହୁଏ ସ୍ୱାଭାବିକ ମୃତ୍ୟୁ କାଳକୁ ଅଶାନ୍ତିର ଦାବଦହନରେ ଦହ୍ୟମାନ ହେବେ ହିଁ ହେବେ ।

ସୁତରାଂ ଏବେ ଯେଉଁ ବୟସରେ, ଯେଉଁ ସ୍ଥିତିରେ ଅଛନ୍ତି ସମୟକୁ ସୁବିନିଯୋଗ କରନ୍ତୁ । ସମୟର ସୁବିନିଯୋଗ ହେଉଛି 'ଅସୀମ'ର ଶରଣାପନ୍ନ ହୁଅନ୍ତି । ପରମାତ୍ମାଙ୍କ ଚିନ୍ତାରେ ଅଧିକ ସମୟ ଦିଅନ୍ତୁ, ଫଳତଃ ଆପଣଙ୍କ ସାଂସାରିକ ଜୀବନରେ ସାଫଲ୍ୟ ସହିତ ପରକାଳ ମଧ୍ୟ ଶୁଭଙ୍କର ହେବ ।

୮୬

**ଜାତୀୟ ଚରିତ୍ର:-**

ଗୋଟିଏ ଜାତିର ସଂପତ୍ତି କାରଖାନାରେ ନଥାଏ, ଖାଦ୍ୟ ଉତ୍ପାଦନରେ ନଥାଏ କିମ୍ବା ଅନ୍ୟ ସାଂସାରିକ ସାମଗ୍ରୀରେ ନଥାଏ । ଏହା ଦେଶର ନାଗରିକମାନଙ୍କର ଚରିତ୍ରବତ୍ତାରେ ହିଁ ନିହିତ । ସାଂସାରିକ ସଂପଦ ଏକାକୀ ଜାତିକୁ ଉନ୍ନତ କିମ୍ବା ସଶକ୍ତ କରିନପାରେ । କିନ୍ତୁ ପ୍ରମୁଖ ଭାବେ ଯେଉଁ ଚରିତ୍ର ମହାନତା ନିମିତ୍ତ ଅଭୟ ହୋଇ ଜାଗ୍ରତ ରହିଛି, ଶୁଦ୍ଧତା, ମହତ୍ତା ପ୍ରଭୃତି ଦେଶକୁ ମହାନ୍ ତଥା ସଶକ୍ତ କରିଥାଏ ।

ଜାତିକୁ ସୌଧ ସହ ତୁଳନା କରାଯାଇପାରେ । ସୌଧକୁ ଧାରଣ କରି ରଖିଥିବା ସ୍ତମ୍ଭ ଭୂଗର୍ଭକୁ ଯେତେ ଯାଇଥିବ ତଦନୁସାରେ ସୌଧର ତୁଂଗୀମା ସମୁନ୍ନତତାକୁ ଧାରଣର ଶ୍ରେୟ ସେହି ସ୍ତମ୍ଭଗୁଡ଼ିକର, ଏଠାରେ ସ୍ତମ୍ଭ ସହିତ ନାଗରିକମାନଙ୍କର ଜାତୀୟ ଚରିତ୍ରକୁ ତୁଳନା କରିପାରିବା । ଗୋଟିଏ ଜାତିର ସାମଗ୍ରୀକ ଚରିତ୍ର ଉନ୍ନତ ତଥା ଉଚ୍ଚଭାବାପନ୍ନ ନହେବା ପର୍ଯ୍ୟନ୍ତ ଜାତି ଉନ୍ନତ ହୋଇ ନପାରେ । ଚରିତ୍ର ଗୁରୁତ୍ୱପୂର୍ଣ୍ଣ ତଥା ମୂଲ୍ୟବାନ୍; କାରଣ ଏହା ଅମୂଲ୍ୟ ସଂପଦ । ସତ୍ୟବାଦିତା, ଦୟା, ସାହାଯ୍ୟପରାୟଣତା ଗୁଡ଼ିକ ଜାତୀୟ ଚରିତ୍ରର ମୁଖଶାଳା ସଦୃଶ । ଏପରିକି ଅନ୍ୟ ଦେଶକୁ ଆକ୍ରମଣ ସେହି ଚରିତ୍ର ମଧ୍ୟରେ କେବେ ଦେଖାଯାଏ ନାହିଁ । ଜୀବନ ବ୍ୟତୀତ କରିବାର ମୂଳସୂତ୍ର ହେଉଛି, ସାଧାରଣ ଭାବେ ଚଳିବା ଏବଂ ସମୁନ୍ନତ ଉଦାର ଭାବନାର ପରିପୋଷଣ କରିବା ।

୮୭

ଧ୍ୟାନର ଆକ୍ଷରିକ ଅର୍ଥ ହେଲା ଗଭୀର ଏକାଗ୍ର ଚିନ୍ତନ ଏବଂ ମାନସିକ ଶାନ୍ତି ନିମିତ୍ତ ଗଭୀର ଭାବେ ଆଧ୍ୟାତ୍ମିକ ତତ୍ତ୍ୱର ଚିନ୍ତାରେ ନିମଜ୍ଜମାନ ତଥା ପ୍ରେମ ଭକ୍ତି ମାର୍ଗରେ ଅନ୍ତର୍ଯାତ୍ରା । ଅନେକ ସମୟରେ ସଂସାର ଯାତ୍ରା ନିର୍ବାହ କରୁଥିବା କାଳରେ ଉପୁଜୁଥିବା ମାନସିକ ଦ୍ୱନ୍ଦ୍ୱ ବ୍ୟକ୍ତି ନିଜର ମାନସିକ ଶାନ୍ତି ହରାଇ ସକଳ ସାଧନ ସତ୍ତ୍ୱେ ଅଶାନ୍ତ ରହିଥାଏ । ଏପରି ସ୍ଥିତିରୁ ମୁକୁଳିଯିବା ପାଇଁ ଧ୍ୟାନର ଅୟମାରମ୍ଭ ହୋଇଥାଏ । ମାନସିକ ସ୍ଥିତି ଯେଉଁ ସ୍ତର ବା ସ୍ଥିତିରେ ରହିଥାଉ ଏହାର ଅଭ୍ୟାସ ଦ୍ୱାରା ଉଦ୍‌ବେଳନ ପ୍ରଶାନ୍ତି ଲାଭ କରେ । ଏ ମାର୍ଗର ଛାତ୍ର ଏହି ଅଭ୍ୟାସ ବିନ୍ୟାସକୁ ବାଛୁରୀ ଜଳରେ ସନ୍ତରଣ ସହ ତୁଳନା କରାଯାଇଛି ।

ଧ୍ୟାନ ଘଣ୍ଟାଏ ଅଧଘଣ୍ଟାଏ, ସକାଳ ସଂଜରେ କିମ୍ବା ଉଭୟ ବେଳାରେ ନିଶ୍ଚଳ ଭାବେ ବସିବାକୁ ବୁଝାଏ ନାହିଁ। ବୁଲାଚଲା କଲାବେଳେ ଶଯ୍ୟାରେ ପଡ଼ିରହି ନିଦ୍ରା ଆସିବା ପୂର୍ବରୁ, ଥକ୍କା ମେଣ୍ଟାଇବା ପାଇଁ ଟିକେ ବସିପଡ଼ିଲା ବେଳେ, ଭ୍ରମଣ କଲାବେଳରେ ମଧ୍ୟ ଧ୍ୟାନ କରିହେବ। ଏ ସକଳ କ୍ଷେତ୍ରରେ ଧ୍ୟାନ କରାଯାଏ ନାହିଁ; ଧ୍ୟାନ ହୋଇଯାଏ। ଉପର କଥିତାନୁସାରେ ଧ୍ୟାନକାରୀ ତ ଥାନ୍ତି, କିନ୍ତୁ କର୍ତ୍ତାର ସେହି ଭାବ ଉଭେଇ ଯାଇଥାଏ।




ବିଚାର-ବିସ୍ତାର:

ଆମେ ଯଦି ଗଭୀର ଭାବେ ଭାବିବା, ଆମେ ଦେଖିପାରିବା ଯେ ବାସ୍ତବ ସାଧୁତା ହେଉଛି ପ୍ରାକୃତିକ (ସ୍ୱାଭାବିକ), ଯେବେ ଅସାଧୁତା ଅସ୍ୱାଭାବିକ। ଉଦ୍ଦେଶ୍ୟମୂଳକ ଭାବେ କେହି କାହାରିକୁ ସତ୍ୟ କହିବା ପାଇଁ କହେ ନାହିଁ। କାହିଁକି ତୁମେ ସତ୍ୟ କହିବ? କେବଳ ଯେ ମିଥ୍ୟାବାଦୀ ତାକୁ ହିଁ ଏହିପରି କୁହାଯାଇଥାଏ। କାହିଁକି ତୁମେ ମିଥ୍ୟା କହୁଛ! ସାଧୁତାକୁ ପଦାରୁ ସଂଗ୍ରହ କରାଯାଏ ନାହିଁ। ମନ୍ଦ ବିଚାର (ନେଗେଟିଭିଟି)କୁ ତ୍ୟାଗ କଲାପରେ ଯାହା ରହେ ତାହା ହେଉଛି ପୁଣ୍ୟ (ସାଧୁତା), ତାହା ପ୍ରାକୃତିକ ନିଷ୍କଳଙ୍କ ଅବସ୍ଥାରେ ରହେ।

ଶରୀର ଏବଂ ମନ ପ୍ରକୃତି ଦତ୍ତ ଯନ୍ତ୍ର, ଯାହା ମନୁଷ୍ୟକୁ ବ୍ୟବହାର ପାଇଁ ପ୍ରାପ୍ତ ହୋଇଅଛି। ମନୁଷ୍ୟ ନିଜ ମଧ୍ୟରେ ଅଦ୍ୱୈତ ଭାବର ବିଚାର କରି ତାହାର ସମୀମତା ଦେଖିଥାଏ। ଏପରିକି ସାଧୁତା ଯଦି ଭ୍ରମାତ୍ମକ ବିଚାର ଦ୍ୱାରା ସୃଷ୍ଟି ତାହା ଏକ ଯନ୍ତା ପରି ହୋଇଥାଏ। ଅହଂକାର ଯୁକ୍ତ ସାଧୁତା ଅନେକ ପାପର ବୀଜ। କିନ୍ତୁ ଯେଉଁମାନେ ଶରୀର ଏବଂ ମନକୁ ଅଳୀକ ବିଚାର କରିଥାନ୍ତି, ପ୍ରକୃତିଠାରୁ ଉଧାର ନିଶ୍ଚୟ କରନ୍ତି, ସେମାନେ ସମୀମତାର ବନ୍ଧନ ମଧ୍ୟରେ ସଂଯୁକ୍ତ ହୁଅନ୍ତି ନାହିଁ।




ଈଶ୍ୱର ସର୍ବତ୍ର ବିଶ୍ୱର ସକଳ ବସ୍ତୁରେ ସମଭାବରେ ବିରାଜିତ। ସେ ସ୍ୱତନ୍ତ୍ର ଭାବେ ଉଦାର ହୃଦୟ ପୁଣ୍ୟାତ୍ମାଙ୍କ ହୃଦୟ ସ୍ଥିତିରେ ବାହ୍ୟ ସଂକେତ ଦ୍ୱାରା ମଧ୍ୟ ଜଣାଯାଏ, ଶ୍ରୀକୃଷ୍ଣ ଭଗବତ୍ ଗୀତାରେ କହିଛନ୍ତି-

ସମୋଽହଂ ସର୍ବଭୂତେଷୁ ନ ମେ ଦ୍ୱେଷ୍ୟୋଽସ୍ତିନ ପ୍ରିୟଃ
ଯେ ଭଜନ୍ତି ତୁ ମାଂ ଭକ୍ତ୍ୟା ମୟିତେ ତେଷୁଚାପ୍ୟହମ୍ । (୯/୨୯)

ଅର୍ଥ ମୋର କେହି ଅତି ପ୍ରିୟ ଅଥବା ଅପ୍ରିୟ ନାହାଁନ୍ତି । ମୋର ଭକ୍ତ ଏବଂ ଅଭକ୍ତ ସମସ୍ତଙ୍କୁ ମୁଁ ସମଭାବରେ ଦେଖେ । ଅଭକ୍ତକୁ ଦ୍ୱେଷ କରେ ନାହିଁ । ମାତ୍ର ଯେ ମୋତେ ଭକ୍ତିର ସହ ନିତ୍ୟ ନିରନ୍ତର ଭଜନ କରେ ସେ ମୋ' ଭିତରେ ଥା'ନ୍ତି ଏବଂ ମୁଁ ତାଙ୍କ ଭିତରେ ଥାଏ ।

ଯଦିଓ ପରମାତ୍ମା ସମାନ ଭାବରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କଠାରୁ ନଗଣ୍ୟ କୀଟ ପର୍ଯ୍ୟନ୍ତ ସକଳ ଅନ୍ତରରେ ଥାଇ ନିୟନ୍ତ୍ରିତ କରିଥାନ୍ତି ଏବଂ ବାହ୍ୟ ଅଭ୍ୟନ୍ତରରେ ସେ ହିଁ ବିରାଜିତ, ଜଡ଼ ଚେତନ ମଧ୍ୟରେ ସେ ହିଁ ବିଦ୍ୟମାନ । ଏହି ପଞ୍ଚେନ୍ଦ୍ରିୟ ଗ୍ରାହ୍ୟ ବିଷୟ ଏବଂ ତଦ୍‌ଊର୍ଦ୍ଧ୍ୱରେ ଯାହା ସକଳ ବିଦ୍ୟମାନ, ସେ ସବୁ ମଧ୍ୟରେ ସେହି ବ୍ରହ୍ମ ହିଁ ବିରାଜିତ । ଅତଏବ ସର୍ବବ୍ରହ୍ମମୟ ଦର୍ଶନର ସାମର୍ଥ୍ୟ ମଧ୍ୟ ତାଙ୍କଠିଠାରୁ ପ୍ରାପ୍ତ ହେବାର ପ୍ରାର୍ଥନା କରିବା ଏକାନ୍ତ ପ୍ରୟୋଜନ ।

୯୦

**ସଦାଚାର:**

ଯାହା ମନୁଷ୍ୟଠାରୁ ପଶୁକୁ ପୃଥକ୍ କରିଥାଏ, ତାହା ହେଉଛି ବ୍ୟବହାର । ପଶୁ ଚରିତ୍ର ଓ ମାନବ ଚରିତ୍ର ମଧ୍ୟରେ ବ୍ୟବଧାନ ରହିଛି । ଯଦି ମାନବ ତା'ର ସମୁନ୍ନତ ବ୍ୟବହାରକୁ ରକ୍ଷା କରି ନପାରିଲା, ତେବେ ସେ ରୂପ, ନାମ, ଆକୃତିରେ ମାନବ ହେଲେ ମଧ୍ୟ ପଶୁ ଜୀବନ, ସ୍ୱଭାବ ଏବଂ ବ୍ୟବହାରରେ ମନୁଷ୍ୟ ପଶୁଠାରୁ ଅଧିକ ମଧୁର । ତୁମ ବ୍ୟବହାର ଦ୍ୱାରା ତୁମେ ନିଶ୍ଚିତ ଭାବେ ପ୍ରମାଣିତ କରିବ ଯେ ତୁମେ ଜଣେ ମନୁଷ୍ୟ । ଯଦି ତୁମ ଇନ୍ଦ୍ରିୟ ଉପରେ ତୁମର ନିୟନ୍ତ୍ରଣ ନାହିଁ, ଯଦି ତୁମ ଜୀବନରେ ନିୟମବଦ୍ଧତା ନାହିଁ, ଯଦି ତୁମ କ୍ରୋଧ ଉପରେ ତୁମର ଆଧିପତ୍ୟ ନାହିଁ, କାମ, କ୍ରୋଧ ଏବଂ ବିଷୟ ବିଳାସରେ ମୁହ୍ୟମାନ, ତୁମର ଯଦି ସଂସ୍କାର ନାହିଁ, ତା' ହେଲେ ତୁମେ ପଶୁ । ସୁତରାଂ ତୁମେ ତୁମ ମାନବତ୍ୱକୁ ପ୍ରମାଣିତ କରିବ । କେବଳ କିଛି ପୁସ୍ତକ ପଠନ ଦ୍ୱାରା କେତେକ ପରୀକ୍ଷାରେ ପାଶ୍ କରି ଡିଗ୍ରୀଟିଏ ପାଇଛ, କିନ୍ତୁ ଜୀବନରେ ବ୍ୟବହାର, ଆଚାର, ଆଚରଣ ଦ୍ୱାରା ନିଜକୁ ମାନବ ଭାବେ ସିଦ୍ଧ କରିବାକୁ ହେବ ।

ମାନବ ଜୀବନରେ ଶୀର୍ଷତମ ସଂପଦ, ଯୁବାବସ୍ଥାରେ ଅନ୍ତିମ ସଂପଦ ହେଉଛି ଚରିତ୍ର । ଚରିତ୍ର ହେଉଛି ଅମୂଲ୍ୟ । ବସ୍ତୁତଃ ତାହା ପ୍ରକୃତ ସଂପତ୍ତି । ଯଦି ତୁମେ ଦିବ୍ୟ ଚରିତ୍ରବତ୍ତା ଉନ୍ନିତ କରାଇବ ତା' ହେଲେ ତୁମେ ବାସ୍ତବରେ ଜଣେ ବିତ୍ତଶାଳୀ ହୋଇପାରିବ । ତା'ର ଅର୍ଥ ହେଲା ତୁମ ଜୀବନ ଐଶ୍ୱର୍ଯ୍ୟମଣ୍ଡିତ ହୋଇ ସଚ୍ଚରିତ୍ରର ଆଧାର ହୋଇଯିବ ।

୯୧

ଗୀତାତୋକ୍ତ ତ୍ରିବିଧ ଦାନ:-

ଗୀତାରେ ଭଗବାନ୍ ତିନି ପ୍ରକାର ଦାନର ବର୍ଣ୍ଣନା କରିଅଛନ୍ତି । ଦେଶ କାଳ ପାତ୍ରକୁ ଧ୍ୟାନରେ ରଖି ପ୍ରତ୍ୟୁପକାର ଆଶାନରଖି ବ୍ୟକ୍ତିକୁ ନିଃସ୍ୱାର୍ଥ ଭାବରେ ଯେଉଁ ଦାନ କରାଯାଏ ତାହା ସାତ୍ତ୍ୱିକ ଦାନ ।

ଯେଉଁ ଦାନ କ୍ଳେଶ ପୂର୍ବକ, ପ୍ରତ୍ୟୁପକାର ପ୍ରୟୋଜନ ନିମିତ୍ତ ଅର୍ଥାତ୍ ଦାନ ବଦଳରେ (ନିଜ ସାଂସାରିକ କାର୍ଯ୍ୟ ସିଦ୍ଧି କରିବା ଆଶାରେ) ଫଳକୁ ଦୃଷ୍ଟିରେ ରଖି (ମାନ, ବଡ଼ପଣ, ପ୍ରତିଷ୍ଠା ଏବଂ ସ୍ୱର୍ଗାଦି ପ୍ରାପ୍ତି ନିମିତ୍ତ ଅଥବା ରୋଗ ନିବୃତ୍ତି ପାଇଁ) ଦିଆଯାଏ ସେହି ଦାନକୁ ରାଜସ ଦାନ କୁହାଯାଏ ।

ଯେଉଁ ଦାନ ଶ୍ରଦ୍ଧାବିନା, ଅସତ୍‌କାର ପୂର୍ବକ ଅଥବା ତିରସ୍କାର ପୂର୍ବକ ଅଯୋଗ୍ୟ ଦେଶ କାଳରେ କୁପାତ୍ର (ମଦ୍ୟ-ମାଂସ ଆଦି ଅଭକ୍ଷ ଖାଉଥିବା, ଜୁଆ ଖେଳୁଥିବା, ଦୁର୍ବ୍ୟସନଯୁକ୍ତ, ଚୋରି ଆଦି ନୀଚକର୍ମକାରୀ ଦୁଶ୍ଚରିତ୍ର)କୁ ଦିଆଯାଏ ସେହି ଦାନକୁ ତାମସ ଦାନ କୁହାଯାଏ- (ଗୀତା ୧୭/୨୦-୨୧-୨୨) ।

୯୨

ଆତ୍ମାର ଲକ୍ଷଣ ଚୈତନ୍ୟ (ଜ୍ଞାନ) । ଜ୍ଞାନ ଶରୀରର ଧର୍ମ ନୁହେଁ, କାରଣ ଶରୀରର କାରଣ ଯେଉଁ ପୃଥିବୀ ଆଦି ଭୂତ, ତହିଁରେ ଜ୍ଞାନ ନାହିଁ । ଯଦି ତହିଁରେ ଜ୍ଞାନ ହୋଇଥାନ୍ତା ତେବେ ତହିଁରୁ ସୃଷ୍ଟ ଘଟ ଆଦିରେ ମଧ୍ୟ ଜ୍ଞାନ ହୁଅନ୍ତା । ଜ୍ଞାନ ଇନ୍ଦ୍ରିୟର ଗୁଣ ନୁହେଁ, କାରଣ କୌଣସି ଇନ୍ଦ୍ରିୟ ନଷ୍ଟ ହୋଇଯିବା ପରେ ପୂର୍ବର ଥିବା ଅନୁଭବ ସ୍ମୃତି ହୋଇ ରହିଥାଏ ଏବଂ ତାହାର ସ୍ମୃତି ହୋଇଥାଏ, ଯାହାକୁ ଅନୁଭବ କରିଛ । ଏଣୁ ଏହା ଅନୁଭବ କରିଥିବା ଇନ୍ଦ୍ରିୟଠାରୁ ଭିନ୍ନ । ଜ୍ଞାନ ମନର

ଗୁଣ ମଧ୍ୟ ନୁହେଁ, କାରଣ ମନ ଜାଣିବାର ସାଧନ, ଜ୍ଞାତା ନୁହେଁ । ଏଣୁ ପରିଶେଷରେ ଜ୍ଞାନ ଆତ୍ମାର ଗୁଣ ସିଦ୍ଧ ହେଲା । ଏଥିରେ ଆତ୍ମାର ଅନୁମାନ ହୋଇଥାଏ । ଏହିପରି ଇଚ୍ଛା, ଦ୍ୱେଷ, ପ୍ରଯତ୍ନ, ସୁଖ-ଦୁଃଖ ମଧ୍ୟ ଶରୀରଠାରୁ ଭିନ୍ନ ଆତ୍ମାକୁ ଅନୁମାନ କରାଇଥାନ୍ତି । ଏହାକୁ ପ୍ରାପ୍ତି ଦିଗରେ ଅହିତର ପରିହାର ନିମିତ୍ତ ଶରୀରର ଚେଷ୍ଟା ମଧ୍ୟ ଏହି କଥାକୁ ପ୍ରକଟ କରେ କି ରଥରେ ରଥର ସାରଥୀ ତୁଲ୍ୟ ନିଜର ହିତ ଅହିତକୁ ଜାଣି ଶରୀରକୁ ଚଳାଉଥିବା (ଶକ୍ତି) ଶରୀରରୁ ପୃଥକ୍, ଏହାର ଅଧିଷ୍ଠାନ ହେଉଛି ଆତ୍ମା ।

ଆକାଶ ପରି ଆତ୍ମା ମଧ୍ୟ ବିଭୁ (ବ୍ୟାପକ) ଏବଂ ନିତ୍ୟ,
ବିଭବାନ୍ମହା ନାକାଶସ୍ତଥା ଚାତ୍ମା- (ବୈ. ୭/୧/୨୨) ।

୯୩

ସଂସାରରେ ଅନେକ ଧର୍ମ, ନାନା ମତ ଏବଂ ଅସଂଖ୍ୟ ସଂପ୍ରଦାୟ ରହିଛି । ପ୍ରତ୍ୟକ୍ଷତଃ ଏ ସକଳର ଉଦ୍ଦେଶ୍ୟ ଏକ । ମାନବ ହୃଦୟରେ ପରସ୍ପର ଏକ ଆଧ୍ୟାତ୍ମିକ ସଂବଂଧବୋଧକୁ ମାନବ ମାତ୍ରକ ପ୍ରତି ଭ୍ରାତୃ ଭାବନା ଏବଂ ଭଗବାନ୍‌ଙ୍କ ପ୍ରତି ପିତୃଭାବନା ଅଥବା ମାତୃଭାବନା ଜାଗ୍ରତ କରିବା । କିନ୍ତୁ ବାସ୍ତବରେ ସ୍ଥିତି କ'ଣ ? ଏକତା, ପ୍ରେମ, ଭ୍ରାତୃତ୍ୱର ପୋଷଣ ସୃଷ୍ଟି କରିବା ସ୍ଥାନରେ ସେମାନେ ମନ ମାଳିନ୍ୟ, ଭୟଭୀତ କରିବା, ମାନବ ସହ ସଂବଂଧ ଭାଂଗିଦେବାରେ ବ୍ୟସ୍ତ ରହୁଛନ୍ତି । ସବୁଠାରୁ ବିସ୍ମୟକର କଥା ହେଉଛି ଏସବୁ ଭଗବାନଙ୍କ ନାମରେ ହିଁ ହେଉଛି ।

ବିଖ୍ୟାତ ଆଚାର୍ଯ୍ୟ, ଯେଉଁମାନେ ଭଗବାନଙ୍କ ଆଲୋକକୁ ମନୁଷ୍ୟ ହୃଦୟ ପର୍ଯ୍ୟନ୍ତ ପହଂଚାଇଛନ୍ତି, କୌଣସି ଗୋଟିଏ ଧର୍ମ, ସମାଜ, ମଠ ବା ମନ୍ଦିରରେ ସେ ନଥାନ୍ତି । ସମଗ୍ର ସଂସାର ହିଁ ତାଙ୍କ ମନ୍ଦିର ଏବଂ ସମସ୍ତ ପ୍ରାଣୀ ତଥା ଜୀବଙ୍କ ହୃଦୟରେ ସେ ବିରାଜମାନ କରିଛନ୍ତି । ସୁତରାଂ ତାଙ୍କ ସ୍ନେହ ମନୁଷ୍ୟ କୃତ, ମତ, ପନ୍ଥା ଏବଂ ବର୍ଗ ଉପରେ ବିଶେଷ ଧ୍ୟାନ ଦେବା ବିନା ସମସ୍ତଙ୍କ ଉପରେ ବୃଷ୍ଟି ହୋଇଯାଉଛି । ପବମାନ ତୁଲ୍ୟ ଉନ୍ମୁକ୍ତ ତାଙ୍କ ନୈସର୍ଗିକ ପ୍ରେମ, ସୌର ରଶ୍ମୀ ପରି ତାଙ୍କ ବିଶ୍ୱବ୍ୟପିନୀ ଦୃଷ୍ଟି ଏବଂ ମାନବ ଜାତିର ପ୍ରତ୍ୟେକ ବ୍ୟକ୍ତି ପାଇଁ ସମାନ ଭାବରେ ତାଙ୍କ କରୁଣା ।

## ୯୪

ଆମର ଧର୍ମ ସନାତନ ଧର୍ମ । ଏହି ଧର୍ମ ତ୍ରିବିଧ, ତ୍ରିମାର୍ଗଗାମୀ ଏବଂ ତ୍ରିକର୍ମରତ । ଆମର ଧର୍ମ ତ୍ରିବିଧ । ଭଗବାନ୍ ଅନ୍ତରାତ୍ମା, ମାନସିକ ଜଗତ୍ ଏବଂ ସ୍ଥୁଳ ଜଗତରେ ଏହି ତିନି ଧର୍ମରେ ପ୍ରକୃତି ସୃଷ୍ଟି । ମହାଶକ୍ତି ଚାଳିତ ବିଶ୍ୱରୂପରେ ଆପେ ଆପଣାକୁ ପ୍ରକଟ କରିଅଛନ୍ତି । ଏହି ତିନି ଧର୍ମରେ ତାଙ୍କ ସହିତ ଯୁକ୍ତ ହେବାର ଚେଷ୍ଟା କରିବା ସନାତନ ଧର୍ମର ତ୍ରିବିଧତ୍ୱ । ଆମର ଧର୍ମ ତ୍ରିମାର୍ଗଗାମୀ । ଜ୍ଞାନ, ଭକ୍ତି ଏବଂ କର୍ମ- ଏହି ତିନି ସ୍ୱତନ୍ତ୍ର ବା ସମ୍ମିଳିତ ଉପାୟରେ ଉକ୍ତ ସଂଯୁକ୍ତାବସ୍ଥାକୁ ମନୁଷ୍ୟ ପ୍ରାପ୍ତ କରିପାରେ । ଏହି ତିନି ଉପାୟରେ ଆତ୍ମଶୁଦ୍ଧି କରି ଭଗବାନଙ୍କ ସହ ଯୁକ୍ତ ହେବାର ଇଚ୍ଛା କରିବା ହିଁ ସନାତନ ଧର୍ମର ତ୍ରିମାର୍ଗଗାମୀ ଗତି । ଆମ ଧର୍ମ ତ୍ରି କର୍ମରତ । ମନୁଷ୍ୟର ସକଳ ପ୍ରଧାନ ପ୍ରବୃତ୍ତିରେ ଯେଉଁ ତିନିବୃତ୍ତି ଉର୍ଦ୍ଧ୍ୱ ଗାମିନୀ, ବ୍ରହ୍ମ ପ୍ରାପ୍ତି ବଳଦାୟିନୀ ତାହା ହେଉଛି ସତ୍ୟ, ପ୍ରେମ ଓ ଶକ୍ତି । ଏହି ତିନି ବୃତ୍ତିର ବିକାଶ ଦ୍ୱାରା ମାନବ ଜାତିର କ୍ରମୋନ୍ନତି ସାଧିତ ହୋଇ ଆସୁଅଛି । ସତ୍ୟ, ପ୍ରେମ ଏବଂ ଶକ୍ତି ଦ୍ୱାରା ତ୍ରିମାର୍ଗ ଆଧାରରେ ଅଗ୍ରସର ହେବା ସନାତନ ଧର୍ମର ତ୍ରିକର୍ମ ।

## ୯୫

ଗୀତାରେ କର୍ମ ଶବ୍ଦ ସ୍ୱଧର୍ମ ଅର୍ଥରେ ବ୍ୟବହୃତ । ଆମର ଖାଇବା, ପିଇବା, ଶୋଇବା ଏହା କର୍ମ; କିନ୍ତୁ ଗୀତାର କର୍ମ ଶବ୍ଦରୁ ସବୁ କ୍ରିୟା ସୂଚିତ ହୁଏ ନାହିଁ । କର୍ମରୁ ଏଠାରେ ସ୍ୱଧର୍ମାଚରଣକୁ କୁହାଯାଇଛି । ପରନ୍ତୁ ଏହି ସ୍ୱଧର୍ମାଚରଣ ରୂପୀ କର୍ମକୁ କରି ନିଷ୍କାମତା ପ୍ରାପ୍ତ କରିବା ପାଇଁ ଆଉ ମଧ୍ୟ ଏକ ବସ୍ତୁର ସହାୟତା ଜରୁରୀ । ତାହା ହେଉଛି କାମ ଓ କ୍ରୋଧକୁ ଜିତିବା । ଯେ ଯାବତ୍ ଚିତ୍ତ ଗଂଗାଜଳ ତୁଲ୍ୟ ନିର୍ମଳ- ପ୍ରଶାନ୍ତ ନହୋଇଛି, ସେ ଯାବତ୍ ନିଷ୍କାମତା ଆସିପାରେ ନାହିଁ । ଏହିପରି ଚିତ୍ତ ସଂଶୋଧନ ପାଇଁ ଯେଉଁ ଯେଉଁ କର୍ମ କରାଯାଏ ତାହାକୁ ଗୀତା ବି କର୍ମ କହିଛନ୍ତି । 'କର୍ମ', 'ବିକର୍ମ' ଓ 'ଅକର୍ମ' ଏହି ତିନି ଗୋଟି ଶବ୍ଦ ଚତୁର୍ଥ ଅଧ୍ୟାୟରେ ବଡ଼ ମହତ୍ତ୍ୱ ରଖେ । କର୍ମର ଅର୍ଥ ହେଉଛି ସ୍ୱଧର୍ମା ଚରଣର ବାହ୍ୟ ସ୍ଥୁଳ କ୍ରିୟା । ଏହି ବାହାର କ୍ରିୟାରେ ଚିତ୍ତ ଲାଗିବା 'ବିକର୍ମ' । ଉପରୁ କାହାରିକୁ ନମସ୍କାର କରୁଛନ୍ତି, କିନ୍ତୁ ମୁଣ୍ଡ ନଇଁବାର ଦୃଶ୍ୟକ୍ରିୟା ସହିତ ଭିତର ମନ ମଧ୍ୟ

ଅବନତ ହେବା ଉଚିତ୍ । ନୋହିଲେ ବାହ୍ୟକ୍ରିୟା ବ୍ୟର୍ଥ । ଅନ୍ତର୍ବାହ୍ୟ- ଭିତର ବାହାର ଦୁଇଟି ଯାକ ଏକ ହେବା ଦରକାର । ବାହାରୁ ଶିବଲିଂଗ ଉପରେ ସତତ ଜଳଧାରା ଢାଳି ଅଭିଷେକ କରୁଅଛୁ । କିନ୍ତୁ ଏହି ଜଳଧାରା ସହିତ ଯଦି ମାନସିକ ଚିନ୍ତନଧାରା ଅଖଣ୍ଡ ଭାବେ ପ୍ରବାହିତ ନହୁଏ ତେବେ ସେ ଅଭିଷେକର ମୂଲ୍ୟ ବା କଅଣ ? ପୁନଃ ଶିବଲିଂଗ ପଥର ଏବଂ ମୁଁ ମଧ୍ୟ ପଥର । ପଥର ସାମ୍ନାରେ ପଥର ବସିଛି, ଏହାର ଅର୍ଥ- ଏହା ହିଁ ହେବ । ନିଷ୍କାମ କର୍ମଯୋଗ ତେବେ ସିଦ୍ଧ ହେବ, ଯେବେ ଆମର ବାହ୍ୟ କର୍ମ ସହିତ ଅନ୍ତରରୁ ଚିତ୍ତ ଶୁଦ୍ଧିରୂପୀ କର୍ମର ମଧ୍ୟ ସଂଯୋଗ ହେବ ।

(ସଂଥ ବିନୋବାଭାବେ)



ପ୍ରାକୃତିକ ସ୍ଥୁଳ ସୂକ୍ଷ୍ମ ସମସ୍ତ ରୂପରେ ପରମାତ୍ମା ବ୍ୟାପ୍ତ ।

'ଈଶାବାସ୍ୟ ମିଦଂ ସର୍ବଂ ଯକ୍ରିଞ୍ଚ ଜଗତ୍ୟାଂ ଜଗତ୍' ।

(ଶୁକ୍ଳ ଯଜୁର୍ବେଦ ୪୦/୧ )(ଈଶାବାସ୍ୟୋପନିଷଦ-୧ )

ତାଙ୍କ ସତ୍ତାରେ ସମସ୍ତ ସତ୍ତାବାନ୍ ହୋଇଛନ୍ତି, ପ୍ରତିଷ୍ଠିତ ହୋଇଛନ୍ତି, ଚେତନ ଅଛନ୍ତି, ଆନନ୍ଦ ସ୍ୱରୂପ ଅଛନ୍ତି । ସେହି ଏକ ତତ୍ତ୍ୱ ବିଭିନ୍ନ ରୂପଧାରଣ କରି ଅନେକ ରୂପରେ ବିଭକ୍ତ ହୋଇଛନ୍ତି ଏବଂ ପୃଥକ୍ ପୃଥକ୍ ରୂପରେ ସେହି ସେହି ପଦାର୍ଥ ତଥା ଦ୍ରବ୍ୟର ଦେବତା ରୂପେ ଅଧିଷ୍ଠିତ । ପ୍ରାକୃତିକ ସ୍ଥୁଳଭୂତ ପଂଚତତ୍ତ୍ୱର ଅଧିଷ୍ଠାତା ଦେବତା ଯଥାକ୍ରମେ- ଆକାଶର ଦେବତା- ବିଷ୍ଣୁ, ଅଗ୍ନିର ଦେବତା- ମହେଶ୍ୱରୀ, ବାୟୁର- ସୂର୍ଯ୍ୟ, ପୃଥିବୀର- ଶିବ ଏବଂ ଜଳର ଦେବତା- ଗଣେଶ । ଏହିପରି ତିଥିର ଦେବତା, ନକ୍ଷତ୍ରର ଦେବତା, ପୃଥିବୀର ସକଳ ପଦାର୍ଥର ପୃଥକ ପୃଥକ୍ ଦେବତା ରହିଛନ୍ତି । ଶାସ୍ତ୍ରରେ ଏହାର ବ୍ୟାପକ ବିଚାର ହୋଇଛି ।

ଦାନରେ ଯେଉଁ ବସ୍ତୁ ଦେୟ, ତାହାକୁ ଦେବା ସମୟରେ ସଂକଳ୍ପରେ ସେହି ବସ୍ତୁର ଦେବତାଙ୍କ ନାମ ଉଚ୍ଚାରଣ ଆବଶ୍ୟକ । ବିଷ୍ଣୁ ଧର୍ମୋତ୍ତର ପୁରାଣରେ ବିସ୍ତୃତ ଭାବେ ଦ୍ରବ୍ୟ ଦେବତାମାନଙ୍କର ଉଲ୍ଲେଖ ରହିଛି । ସଂକ୍ଷେପରେ ଏଠାରେ ଉଲ୍ଲେଖ କରାଗଲା ।

| ଦେୟ ଦ୍ରବ୍ୟ | ଦେବତା |
| --- | --- |
| ଭୂମି | ବିଷ୍ଣୁ |
| ଧେନୁ | ରୁଦ୍ର |
| କୁମ୍ଭ, କମଣ୍ଡଳରୁ ଆଦି ଜଳପାତ୍ର | ବରୁଣ |
| ସମୁଦ୍ର ଜାତ ରତ୍ନାଦି ପଦାର୍ଥ | ବରୁଣ |
| ସ୍ୱର୍ଣ୍ଣ- ଲୌହ ପଦାର୍ଥ | ଅଗ୍ନି |
| ସମସ୍ତ ଫସଲ, ପକ୍ୱାନ୍ନ ପଦାର୍ଥ | ପ୍ରଜାପତି |
| ଗନ୍ଧଯୁକ୍ତ ପଦାର୍ଥ | ଗନ୍ଧର୍ବ |
| ବିଦ୍ୟା, ପୁସ୍ତକ ଆଦି | ସରସ୍ୱତୀ (ବ୍ରାହ୍ମୀ) |
| ଶିଳ୍ପ ପଦାର୍ଥ (ବାସନ ଆଦି) | ବିଶ୍ୱକର୍ମା |
| ବୃକ୍ଷ, ପୁଷ୍ପ, ଶାକ, ଫଳ | ବନସ୍ପତି ଦେବତା |
| ଛତ୍ର, ଶଯ୍ୟା, ରଥ, ଆସନ, ଉପାନହ, ଅପ୍ରାଣୀଦ୍ରବ୍ୟ | ଅଂଗୀରସ |
| ଗୃହ | ସର୍ବଦୈବତ (ବିଶ୍ୱଦେବ) |
| ଅନ୍ୟ ଅନୁକ୍ତ ପଦାର୍ଥ | ବିଷ୍ଣୁ |




**ଦାନର ମର୍ମ କଥା:-**

ଦାନର ମହତ୍ତ୍ୱରେ ଉନ୍ନତ ରହସ୍ୟ ଲୁଚି ରହିଛି । ବସ୍ତୁତଃ ପ୍ରତ୍ୟେକ ସତ୍‌କାର୍ଯ୍ୟ ଦାନ ଅନ୍ତର୍ଗତ । ଯଦି ତୁମେ ତୁମ ଭାଇକୁ ନିଜ ହସ ଦ୍ୱାରା ଆନନ୍ଦିତ କରୁଛ, ଏପରି କରିବା ମଧ୍ୟ ଦାନ । ଯଦି ଆମେ ନିଜ ସାଂଗ ସାଥୀକୁ ଅଥବା ଅନ୍ୟ କୌଣସି ବ୍ୟକ୍ତିକୁ ସତ୍‌କର୍ମର ପ୍ରେରଣା ଦେଉଛନ୍ତି ବା ତାଙ୍କ ହିତପାଇଁ କିଛି ପରାମର୍ଶ ଦେଉଛନ୍ତି ତେବେ ତାହା ମଧ୍ୟ ଦାନ । ମାର୍ଗ ଭୁଲି ଯାଇଥିବା ବଟୋଇକୁ ଉଚିତ୍ ମାର୍ଗ ଦର୍ଶାଇ ଦେବା, ଅନ୍ଧ ବ୍ୟକ୍ତିକୁ ମାର୍ଗ ବତାଇ ଦେବା, ସଡ଼କରେ ପଡ଼ିଥିବା ପଥର, କଣ୍ଟା, ଅନ୍ୟ ଦୁଃଖଦାୟୀ ପଦାର୍ଥକୁ ବାହାରକୁ ପକାଇ ଦେବା,

କ୍ଷୁଧାର୍ତ୍ତଙ୍କୁ ଅନ୍ନ, ତୃଷାର୍ତ୍ତଙ୍କୁ ଜଳଦାନ ଏ ସମସ୍ତ ଦାନ କୋଟୀର ଅନ୍ତର୍ଗତ ।

× × ×

ଯଦି ଦାନ ପଛରେ ଯଶଲିପ୍‌ସା ବା ଅହଂକାର ରହିଛି ତେବେ ଏହି ଦାନ ଦାନହୋଇ ମଧ୍ୟ ଉଚ୍ଚକୋଟୀର ହୋଇପାରେ ନାହିଁ । ଦାନରେ ଦେବାର ଅହଂକାର, ଏପରିକି ଭାବ ନ ରହିବା ଉଚିତ୍ । ଏହା ଅନୁଭୂତି ହେବ କି ସବୁକିଛି ପ୍ରଭୁଙ୍କର, ମୋର ନିଜର କିଛି ନାହିଁ, ଦାନକୁ ସାତ୍ତ୍ୱିକ କରିଦିଏ । ସବୁକିଛି ତାଙ୍କର, ତାଙ୍କ ସତ୍‌ପ୍ରେରଣାରେ ଏସବୁ କାର୍ଯ୍ୟ ହେଉଛି । ଏଣୁ ତାଙ୍କ କୃପାରୁ ଏହି ପୁଣ୍ୟ କାର୍ଯ୍ୟ ହେଲା ଏବଂ ମୁଁ ଧନ୍ୟ ହୋଇଗଲି । ମୋର ଧନ, ଧାନ୍ୟ ପୌରୁଷ ସଫଳ ହେଲା । ଏହି ଭାବନା ଦାନରେ ହେବା ବିଧେୟ ।

୯୮

## ଧର୍ମାଚରଣ:-

ମନୁ ମହାରାଜ କହନ୍ତି କି ଯେପରି ଉଇ ଧୀରେ ଧୀରେ ମୃତ୍ତିକା ସଂଚୟ କରି ବିଶାଳ ହୁଙ୍କା ନିର୍ମାଣ କରନ୍ତି, ସେହିପରି ମନୁଷ୍ୟଙ୍କୁ ଧୀରେଧୀରେ ଅନବରତ ପୁଣ୍ୟାର୍ଜନ କରିବା ଉଚିତ୍ । କାରଣ ପରଲୋକରେ ଧର୍ମ ବ୍ୟତୀତ ଅନ୍ୟ କୌଣସି ସହାୟକ ହୁଏ ନାହିଁ । ପ୍ରାଣୀ ଏକାକୀ ଜନ୍ମ ନିଏ, ଏକା ମରିଥାଏ ଏବଂ ଏକାକୀ ହିଁ ପୁଣ୍ୟ ପାପର ଫଳ ଭୋଗିଥାଏ । ମୃତ ଶରୀରକୁ ବନ୍ଧୁ ବାନ୍ଧବ କାଠ, ଢେଲା, ପଥର ପରି ଭୂମି ଉପରେ ପକାଇ ଦିଅନ୍ତି । କେହି ତାହା ସହ ଯାଏ ନାହିଁ । ଧର୍ମ କେବଳ ତାହା ସହିତ ଯାଇଥାଏ- 'ଧର୍ମସ୍ତ ମନୁଗଛତି' (ମନୁ ୪/୨୪୧) ଏବଂ ଏହି ଧର୍ମ ତାକୁ ନରକରୁ ନିସ୍ତାରଣ କରିଥାଏ । ଅତଃ ଇହଲୋକରେ ଦାନ ଆଦି ଶ୍ରେଷ୍ଠ କର୍ମର ଅନୁପାଳନ କରିବା ଉଚିତ୍ । ଦାନଧର୍ମଂ ନିଷେବେତ (ମନୁ ୪/୨୨୭) ।

ଧର୍ମାଚରଣକାରୀଙ୍କୁ ସାବଧାନ କରାଇ କହିଛନ୍ତି କି ସତ୍‌କର୍ମ କରି ତାହାର ଚର୍ଚ୍ଚା କର ନାହିଁ । କାରଣ ଏଥିରେ କର୍ତ୍ତୃତ୍ୱାଭିମାନ ଆସିଥାଏ, ଫଳ ପ୍ରାପ୍ତି ହୁଏ ନାହିଁ । 'ନଦତ୍ତ୍ୱା ପରି କୀର୍ତ୍ତୟେତ' 'ଦାନଂ ଚ ପରିକୀର୍ତ୍ତ ନାତ୍' (ମନୁ ୪/୨୩୬-୨୩୭) । ମୁଁ ଦାନ ଦେଇଛି ବା ମୁଁ ଦାତା, ଏପରି କହିବା ଦ୍ୱାରା ଦାନର ଫଳ ନଷ୍ଟ ହୋଇଥାଏ ।

୯୯

ଶାନ୍ତମନ:-

ଯଦି ଆପଣ ଶାନ୍ତି ଚାହୁଁଛନ୍ତି, ଯଦି ଆପଣ ଭବ୍ୟ ବିଚାର ଚାହୁଁଛନ୍ତି ତେବେ ଆପଣ ଉଚ୍ଚ ବଖରାରେ ରହନ୍ତୁ । ଉଚ୍ଚସ୍ଥାନରେ ବସି ଚିନ୍ତନ, ସ୍ୱାଧ୍ୟାୟ ପୂଜା ପାଠ ଏବଂ ଲିଖନ ଆଦି କାର୍ଯ୍ୟ କରନ୍ତୁ । ଉନ୍ନତି ଦିଗରେ ଭବ୍ୟ ବିଚାର ଉପରୁ ହିଁ ଆକାଶରୁ ବିସ୍ତାରିତ ହୋଇଥାଏ । ଆକାଶ ଶୁଭ ବିଚାରରେ ପରିପୂର୍ଣ୍ଣ । ଆମେ ଆମର ଅଧିକତର ସମୟ ଭବ୍ୟ ଚିନ୍ତନରେ ହିଁ ବ୍ୟତୀତ କରିବା ଉଚିତ୍ । ଆପଣ ନିଜ ସହରରୁ ବାହାରକୁ ଯାଇ କୌଣସି ବଗିଚାରେ ଏପରି ସ୍ଥାନର ସନ୍ଧାନ କରିପାରିବେ ଯେଉଁଠି ଉଚ୍ଚତର ଚିନ୍ତନ ହୋଇପାରିବ । ନୋହିଲେ ନିଜ ଘରର ଛାତକୁ ଏଥିପାଇଁ ବ୍ୟବହାର କରିପାରିବେ । କୌଣସି ବୃକ୍ଷ ତଳେ ସ୍ଥାନ ନିରୂପଣ କରିପାରିବେ । ଏଠାରେ ବସି ଆପଣ ନିଜ ଉଦ୍ଦେଶ୍ୟ ଏବଂ କାର୍ଯ୍ୟ ପ୍ରଣାଳୀ ଉପରେ ବିଚାର କରନ୍ତୁ । ଭାବି ଉନ୍ନତିର ନୂତନ ଯୋଜନା ବା ଧର୍ମ ଗ୍ରନ୍ଥର ଅଧ୍ୟୟନ, ମନନ, ଚିନ୍ତନ କରିପାରିବେ । (ରାମଚରଣ ମହେନ୍ଦ୍ର)

୧୦୦

ହିନ୍ଦୁଧର୍ମର ଏହା ଏକ ବିଶେଷତା କି ଏହାର କୌଣସି ନିଜ ନାମ ନାହିଁ । ପ୍ରାଚୀନ ଶାସ୍ତ୍ରମାନଙ୍କରେ 'ହିନ୍ଦୁଧର୍ମ'ର ଉଲ୍ଲେଖ ଦେଖିବାକୁ ମିଳେ ନାହିଁ । ହିନ୍ଦୁ ଶବ୍ଦ ସିନ୍ଧୁ ଶବ୍ଦର ବିକୃତ ରୂପ । ସିନ୍ଧୁ ନଦୀର ପରପାରିରେ ବସତି କରିଥିବା ଲୋକମାନଙ୍କୁ ପଶ୍ଚିମ ଲୋକେ 'ହିନ୍ଦୁ' କହୁଥିଲେ ଏବଂ ତାଙ୍କ ଧର୍ମକୁ ହିନ୍ଦୁଧର୍ମ କହୁଥିଲେ । ପ୍ରାଚୀନ ଶାସ୍ତ୍ରରେ 'ହିନ୍ଦୁଧର୍ମ'କୁ କେବଳ 'ଧର୍ମ' ଶବ୍ଦରେ ସୂଚିତ କରାଯାଇଛି । ଏଥିରୁ ଜଣାଯାଏ ଯେ ତତ୍‌କାଳରେ ହିନ୍ଦୁଧର୍ମ ବ୍ୟତୀତ ଅନ୍ୟ କୌଣସି ଧର୍ମ ହିଁ ନଥିଲା । କେଉଁଠି କେଉଁଠି ଏହି ଧର୍ମକୁ ସନାତନ ଧର୍ମ କୁହାଯାଇଛି । 'ଏଷଃ ଧର୍ମଃ ସନାତନଃ' । ଏହା ହେଉଛି ସନାତନ ଧର୍ମ । 'ସନାତନ ଧର୍ମ' ଶବ୍ଦରେ ହିନ୍ଦୁଧର୍ମର ଏକମାତ୍ର ଗୁଣର ଉଲ୍ଲେଖ ହୋଇଛି । ସନାତନର ଅର୍ଥ ହେଉଛି ନିତ୍ୟ, ସ୍ଥାୟୀ, ଅର୍ଥାତ୍ ଏହାର ଉତ୍ପତ୍ତି ନାହିଁ । କୌଣସି ସମୟ ବିଶେଷରେ କୌଣସି ବ୍ୟକ୍ତି ବିଶେଷ ଦ୍ୱାରା ଏହି ଧର୍ମ ପ୍ରଚଳିତ ହୋଇ ନାହିଁ । ଶ୍ରୀରାମ ବା ଶ୍ରୀକୃଷ୍ଣ ବ୍ୟାସ ବା ବାଲ୍ମୀକି କେହି ମଧ୍ୟ ହିନ୍ଦୁଧର୍ମର ସଂସ୍ଥାପକ ନୁହଁନ୍ତି । ଏହି ଧର୍ମ ତାଙ୍କ ପୂର୍ବରୁ ମଧ୍ୟ ଥିଲା । ସେମାନେ ମଧ୍ୟ ଏହାକୁ ଅନାଦି ସନାତନ ଧର୍ମ କହିଛନ୍ତି ।

(ଶ୍ରୀବସନ୍ତ କୁମାର ଚଟ୍ଟୋପାଧ୍ୟାୟ)

**୧୦୧**

## ସୁପ୍ରଭାତ:-

ପ୍ରାତଃ ଜାଗରଣ ପରେ ଯଥା ସଂଭବ ସର୍ବପ୍ରଥମ ମାଂଗଳିକ ବସ୍ତୁ (ଗୋ, ତୁଳସୀ, ପୀପ୍‌ପଳ, ଗଂଗା, ଦେବବିଗ୍ରହାଦି) ଯାହା ବି ଉପଲବ୍‌ଧ ତା'ର ଦର୍ଶନ କରିବା ଉଚିତ୍ । ପରେ ମାତା, ପିତା ଏବଂ ଗୁରୁଜନ ନିଜଠାରୁ ଜ୍ୟେଷ୍ଠଙ୍କୁ ପ୍ରଣାମ କରିବା ଉଚିତ୍ । ଏହାଦ୍ୱାରା ଅପାର ଲାଭ ହୋଇଥାଏ । ପ୍ରଣାମ (ଅଭିବାଦନ) କରୁଥିବା ଏବଂ ନିତ୍ୟ ବୃଦ୍ଧଲୋକଙ୍କ ସେବା କରୁଥିବା ପୁରୁଷ (ବ୍ୟକ୍ତି) ର ଆୟୁ, ବିଦ୍ୟା, ଯଶ, ଶକ୍ତି ବର୍ଦ୍ଧନ ହୋଇଥାଏ । ଡାହାଣ ହାତରେ ତାଙ୍କ ଡାହାଣ ପାଦ ଏବଂ ବାମ ହାତରେ ତାଙ୍କ ବାମ ପାଦ ସ୍ପର୍ଶ ହେବା ବିଧି । ମନୁଷ୍ୟ ଶରୀରରେ ରହୁଥିବା ବିଦ୍ୟୁତ୍ ତରଂଗ ପୃଥିବୀ ଦ୍ୱାରା ଆକୃଷ୍ଟ ହୋଇ ପାଦ ମାର୍ଗରେ ଚାଲିଯାଏ । ପାଦ ସ୍ପର୍ଶ ଦ୍ୱାରା ସେହି ବିଦ୍ୟୁତ୍ ସ୍ରୋତ କରୁଥିବା ବ୍ୟକ୍ତି ମଧ୍ୟରେ ସଂଚାରିତ ହୁଏ । ଏଥି ସହିତ ତାଙ୍କ ମଧ୍ୟରେ ଥିବା ଜ୍ଞାନାଦି ସଦ୍‌ଗୁଣର ପ୍ରବେଶ ହୋଇଥାଏ । ବିଦ୍ୟୁତ୍ ସ୍ରୋତ ମୁଖ୍ୟତଃ ପାଦ ଦ୍ୱାରା ଅଧିକ ସଂଚାଳିତ ହେଉଥିବାରୁ ପାଦ ସ୍ପର୍ଶ କରାଯାଏ ମୁଣ୍ଡ ଆଦି ନୁହେଁ । ବୃଦ୍ଧ ପୁରୁଷଙ୍କୁ ପ୍ରଣାମ ଦ୍ୱାରା ସେମାନେ ପ୍ରସନ୍ନ ହୋଇଥାନ୍ତି ଏବଂ ତାଙ୍କ ମଧ୍ୟରେ ଦୀର୍ଘ କାଳଧରି ସଂଚିତ ଜ୍ଞାନରାଶି ଅଭିବାଦନକାରୀ ମଧ୍ୟକୁ ସୂକ୍ଷ୍ମଭାବେ ପ୍ରବେଶ କରିଥାଏ । ସୁତରାଂ ଜ୍ଞାନ ଦାନ ଦ୍ୱାରା, ଶୁଭ ଚିନ୍ତନ ଦ୍ୱାରା ପ୍ରତ୍ୟକ୍ଷ ଭାବେ ଏବଂ ବିଦ୍ୟୁତ୍ ପ୍ରବାହ ଦ୍ୱାରା ଅପ୍ରତ୍ୟକ୍ଷ ଭାବେ ତାଙ୍କ ଗୁଣର ପ୍ରଭାବ ପ୍ରଣାମକାରୀକୁ ପ୍ରାପ୍ତ ହୁଏ ।

ଅପର ପକ୍ଷେ ପ୍ରଣାମକାରୀ ମନରେ ଥିବା ବୃଥା ଅଭିମାନ, ଅହଂକାରର ବିନାଶ ମଧ୍ୟ ହୋଇଥାଏ ।

**୧୦୨**

## ପ୍ରାଣାୟାମ:-

ଭଜନ, ଧ୍ୟାନ, ସ୍ୱାଧ୍ୟାୟ, ପୂଜା ଆଦି ସାତ୍ତ୍ୱିକ କାର୍ଯ୍ୟ ନିମିତ୍ତ ଶାନ୍ତ ଏବଂ ସାତ୍ତ୍ୱିକ (ପଜିଟିଭ) ମନର ପରମ ଆବଶ୍ୟକତା ରହିଛି । ପ୍ରାଣାୟାମ ଦ୍ୱାରା ପ୍ରାଣର ସମଗତି (ଦୁଇ ସ୍ୱରରେ ସମଭାବେ ଚାଳିତ ହେବା) ହେବା ଦ୍ୱାରା ମନ ପ୍ରଶାନ୍ତ ଓ ସାତ୍ତ୍ୱିକ ହୋଇଯାଏ । ଏହା ହିଁ ପ୍ରାଣାୟାମର ଆଧ୍ୟାତ୍ମିକ ପ୍ରୟୋଜନ । ପ୍ରାଣାୟାମ

ଦ୍ୱାରା ଶରୀରର ମଧ୍ୟ ଅଶେଷ ଲାଭ ହୋଇଥାଏ । ଆମ ଜୀବନ ଶ୍ୱାସ- ପ୍ରଶ୍ୱାସ ରୂପ ପ୍ରାଣକୁ ଆଧାର କରି ରହିଛି । ଏହି କାର୍ଯ୍ୟକୁ ଯେଉଁ ଫୁସ୍‌ଫୁସ୍ ଦ୍ୱାରା କରାଯାଏ, ତାହାର ସ୍ଥିତି ସ୍ଥାପକ ଶକ୍ତିକୁ ସୁରକ୍ଷା କରିବା ଆମ ଦାୟିତ୍ୱ । ଏ କାର୍ଯ୍ୟ ପ୍ରାଣାୟାମ ଦ୍ୱାରା ସମ୍ୟକ ଭାବେ ହୋଇଥାଏ ।

ଭିନ୍ନଭିନ୍ନ ଲାଭ ପାଇଁ ବିଭିନ୍ନ ପ୍ରକାର ପ୍ରାଣାୟାମର ବିଧାନ ଶାସ୍ତ୍ର ନିର୍ଦ୍ଧାରିତ । ସଂଧ୍ୟା ଉପାସନାଦି ଅଂଗ ରୂପ ପ୍ରାଣାୟାମର ସାମାନ୍ୟ ବିଧି ଏହିପରି ଆସନ ଉପରେ ଶାନ୍ତ ମନରେ ସୁଖ, ପଦ୍ମ, ସ୍ୱସ୍ତିକ, ବ୍ରଜ ଆଦି ଆସନରେ ସ୍ଥିର ଭାବେ ବସି ରହି ବାମ ନାସାପୁଟରେ ପ୍ରାୟ ୮ ସେକେଣ୍ଡ ବାୟୁ ଭିତରକୁ ନେବେ (ଏହାକୁ ପୂରକ କୁହାଯାଏ), ନାସା ଦୁଇପୁଡ଼ାକୁ ବନ୍ଦ କରି ଅର୍ଥାତ୍ ଗ୍ରହଣ- ତ୍ୟାଗ ନକରି ୧୬ ସେକେଣ୍ଡ ରୋଧ କରିବେ (ଏହାକୁ କୁମ୍ଭକ କୁହାଯାଏ), ପୁନଃ ଦକ୍ଷିଣ ନାସା ପୁଟରେ ୧୬ ସେକେଣ୍ଡ ପର୍ଯ୍ୟନ୍ତ ଧୀରେ ଧୀରେ ତ୍ୟାଗ କରିବେ (ଏହାକୁ ରେଚକ ପ୍ରାଣାୟାମ କୁହାଯାଏ) ।

ସ୍ୱାସ୍ଥ୍ୟ ଦୃଷ୍ଟିରୁ ଅନୁଲୋମ ବିଲୋମ ଗୋଟିଏ ପୁଟରେ ନେବା ଏବଂ ଅପର ପୁଟରେ ଛାଡ଼ିବା ଏବଂ କପାଳ ଭାତି ପ୍ରାଣାୟାମ ଫଳପ୍ରଦ । ଶିଶୁ, ଅଧ୍ୟାୟୀ, ବୟସ୍କ ସମସ୍ତଙ୍କ ପାଇଁ ଭ୍ରାମରୀ ପ୍ରାଣାୟାମ ଲାଭପ୍ରଦ ।

**୧୦୩**

## ନିଦ୍ରାଃ-

ରାତ୍ରି ଭୋଜନ ପରେ ତୁରଂତ ଶୋଇବାକୁ ଯିବା ଅନୁଚିତ୍ । ଶୟନ ପୂର୍ବରୁ ସଦ୍‌ଗ୍ରନ୍ଥ ସ୍ୱାଧ୍ୟାୟ ଏବଂ ଭଗବତ୍ ସ୍ମରଣ ଅବଶ୍ୟ କରଣୀୟ । ବିଛଣାକୁ ଯିବା ପୂର୍ବରୁ ଲଘୁଶଂକା, ହାତ, ପାଦ ଧୌତ କରି ଭଲ ଭାବରେ ପୋଛି ପୂର୍ବ ବା ଦକ୍ଷିଣ ଦିଗକୁ ମସ୍ତକ ରଖି ଶୟନ କରିବା ବିଧି । ବାୟୁ ଚଳାଚଳ ବଖରା ଏଥିପାଇଁ ଉପଯୁକ୍ତ । ଭଗବତ୍ ନାମ ସ୍ମରଣ ପୂର୍ବକ ବାମପାର୍ଶ୍ୱରେ ଶୟନ ସ୍ୱାସ୍ଥ୍ୟ ନିମିତ୍ତ ଉତ୍ତମ । ସାଧାରଣ ଭାବେ ୬-୭ ଘଣ୍ଟା ଶୋଇବା ଦ୍ୱାରା ନିଦ୍ରା ପୂର୍ଣ୍ଣ ହୋଇଥାଏ । ଅଭ୍ୟାସ କରିପାରିଲେ ସମୟ ଅବଧି ଊଣା ହୋଇପାରେ । ଶୋଇବା ସମୟରେ ମୁହଁ ଢାଙ୍କି ଓ ମୋଜା ପିନ୍ଧିବା ଅନୁଚିତ୍ । ରାତିରେ ଶୀଘ୍ର ବିଛଣାକୁ ଯାଇ ଭୋରୁ ଉଠିବା ଲାଭପ୍ରଦ ।

ମନୁଷ୍ୟ ଶୋଇ ଉଠିଲା ପରେ ଶାନ୍ତ ଅନ୍ତଃକରଣରେ ଯାହାର ଚିନ୍ତନ କରିଥାଏ, ତା'ର ଗଭୀର ପ୍ରଭାବ ପଡ଼ିଥାଏ । ଶୋଇବା ପୂର୍ବରୁ ଯେଉଁ ବିଷୟ ଚିନ୍ତା କରିଥାଏ, ତାହାର ପ୍ରଭାବ ମଧ୍ୟ ମାନସିକ ସ୍ତରରେ ଗଭୀର ଭାବେ ଦେଖା ଦେଇଥାଏ । ଏଣୁ ଶୋଇବା ପୂର୍ବରୁ ବିଷୟ ସମସ୍ୟା, ଅର୍ଥ ସମସ୍ୟା, ପାରିବାରିକ ସମସ୍ୟା ଆଦିରୁ ଯଥା ସଂଭବ ମୁକ୍ତ ହୋଇ ଈଶ୍ୱର ଚିନ୍ତନ କରିବା ଦରକାର । କାରଣ ସମସ୍ୟା ଯାହା ହେଉ, ଯେଉଁ ପ୍ରକାରର ହେଉ, ଯେତେ ବ୍ୟାପକ ବା ଗଭୀର ହେଉ ସମାଧାନ ଗୋଟିଏ ତତ୍ତ୍ୱ ବିଚାରରେ ଛାଡ଼ି ଦେଲେ ଆମେ ଟେନ୍‌ସନ୍‌ରୁ ମୁକ୍ତ ହେବା, ଏହି ବିଶ୍ୱାସକୁ ନିଜ ଭିତରେ ଦୃଢ଼ କରୁଥାନ୍ତୁ ।

ନିଦ୍ରା ଆମ ସକଳ କ୍ଳାନ୍ତି ଦୂର କରି ନବଶକ୍ତି ସଂଚାର କରିଥାଏ । ନିଦ୍ରାରୁ ଉଠିବାକୁ କେହି ନବଜନ୍ମ କହିଥିଲା ବେଳେ ଅନ୍ୟ କେତେକ ନୂତନ ଶକ୍ତି ସଂଚାର ବୋଲି ଅଭିହିତ କରିଅଛନ୍ତି ।

୧୦୪

ପଞ୍ଚ ମହାଯଜ୍ଞ:-

୧. ବ୍ରହ୍ମଯଜ୍ଞ- ବେଦ, ଉପନିଷଦ, ରାମାୟଣ, ମହାଭାରତ ଆଦି ସଦ୍‌ଗ୍ରନ୍ଥର ଅଧ୍ୟୟନ, ଅଧ୍ୟାପନ ଓ ସ୍ୱାଧ୍ୟାୟକୁ ବ୍ରହ୍ମଯଜ୍ଞ କୁହାଯାଏ । ବ୍ରହ୍ମଯଜ୍ଞ ଦ୍ୱାରା ଜ୍ଞାନ ବୃଦ୍ଧି ହୋଇଥାଏ । ଏହା ସଂପନ୍ନ କରିବା ଦ୍ୱାରା ବ୍ୟକ୍ତି ଋଷି ଋଣରୁ ମୁକ୍ତ ହୋଇଥାଏ ।

୨. ଦେବଯଜ୍ଞ- ନିଜର ଇଷ୍ଟଦେବଙ୍କ ଉପାସନା ତଥା ପରମାତ୍ମା-ପରଂବ୍ରହ୍ମଙ୍କ ନିମିତ୍ତ ଅଗ୍ନିରେ କରାଯାଉଥିବା ହବନକୁ ଦେବଯଜ୍ଞ କୁହାଯାଏ । ଦେବଋଣରୁ ଅଋଣୀ ହେବା ପାଇଁ ଦେବଯଜ୍ଞ କରିବା ବିଧି ।

୩. ଭୂତଯଜ୍ଞ- କୀଟ, ପତଙ୍ଗ, ପଶୁ, ପକ୍ଷୀ, (ଜନପଦ ଆଶ୍ରିତ ଜୀବଜନ୍ତୁ) ଆଦିଙ୍କ ସେବାକୁ ଭୂତଯଜ୍ଞ କୁହାଯାଏ । ସାଧାରଣ ଭାବେ କହିଲେ ଏପରି ହେବ ଯେ ପ୍ରତ୍ୟେକ ପ୍ରାଣୀ ଅପରକୁ ନିଜ ସୁଖ ପାଇଁ ପ୍ରତିଦିନ କ୍ଳେଶ ଦେଉଛନ୍ତି କାରଣ ଏହା ବିନା ଶରୀର ଯାତ୍ରା ସଂଭବ ନୁହେଁ । ଅତଃ ଭୂତ ଜୀବଙ୍କଠାରୁ ଅଋଣୀ ହେବା ନିମିତ୍ତ ଭୂତଯଜ୍ଞ କରିବା ଆବଶ୍ୟକ । ଏହାଦ୍ୱାରା କୀଟ- ପତଙ୍ଗ, ପଶୁ, ପକ୍ଷୀ ଆଦିର ତୃପ୍ତି ହୋଇଥାଏ ।

୪.ପିତୃଯଜ୍ଞ- ପିତରଙ୍କ ନିମିତ୍ତ ତର୍ପଣ ତଥା ଶ୍ରାଦ୍ଧ ଆଦି କରାଯାଇଥାଏ, ଏହାକୁ ପିତୃଯଜ୍ଞ କୁହାଯାଏ । ଏଥିରେ ସମସ୍ତ ଲୋକ ତଥା ପିତରଙ୍କ ତୃପ୍ତି ହୁଏ । ଏହାଦ୍ୱାରା ଲୋକରେ ଯଶ, ଧନ ତଥା ସଂତାନ ପ୍ରାପ୍ତିର ସୁଖ ମିଳେ ।

୫. ମନୁଷ୍ୟ ଯଜ୍ଞ- କ୍ଷୁଧାର୍ତ୍ତ ବ୍ୟକ୍ତି ଘରକୁ ଆସିବା ମାତ୍ରେ ଭୋଜନାଦି ଦ୍ୱାରା କରାଯାଉଥିବା ତାଙ୍କ ସେବାକୁ ମନୁଷ୍ୟ ଯଜ୍ଞ କୁହାଯାଏ । ଅତିଥି ଯେଉଁ ବର୍ଗର ହୁଅନ୍ତୁ ତାଙ୍କୁ 'ନାରାୟଣ' ସ୍ୱରୂପ ବିଚାର କରି ମଧୁର ବଚନ, ଜଳ, ଅନ୍ନ, ଆଦିର ଯଥାଶକ୍ତି ସେବା କରିବା ବିଧି । ମନୁଷ୍ୟ ଯଜ୍ଞ ଦ୍ୱାରା ଧନ, ଆୟୁ, ଯଶ ଓ ସ୍ୱର୍ଗାଦି ପ୍ରାପ୍ତି ହୁଏ ।

୧୦୫

ଦେବୋପାସନା:-

ଜୀବନରେ ଉପାସନାର ବିଶେଷ ମହତ୍ୱ । ମନୁଷ୍ୟ ଯେବେ ନିଜ ଜୀବନର ଲକ୍ଷ୍ୟ ନିର୍ଦ୍ଧାରିତ କରିନିଏ, ତେବେ ସେ ତନ- ମନ- ଧନରେ ସେହି ଲକ୍ଷ୍ୟ ପ୍ରାପ୍ତିରେ ସଂଲଗ୍ନ ରହେ । ମନୁଷ୍ୟର ବାସ୍ତବିକ ଲକ୍ଷ୍ୟ ହେଉଛି ଭଗବତ୍ ପ୍ରାପ୍ତି । ଏହି ଲକ୍ଷ୍ୟକୁ ପ୍ରାପ୍ତି କରିବା ପାଇଁ ତାକୁ ଯଥାଶକ୍ତି ସାଂସାରିକ ବିଷୟ ବାସନା ତଥା ଭୋଗରୁ ଦୂରରେ ରହି ଭଗବତ୍ ଆରାଧନା ଏବଂ ଅଭୀଷ୍ଟ ଦେବଙ୍କ ଉପାସନାରେ ସଂଲଗ୍ନ ରହିବା ପ୍ରୟୋଜନ । ଯେପରି ଗଂଗାର ଅବିଛିନ୍ନ ପ୍ରବାହ ସମୁଦ୍ର ମୁଖୀ ହୋଇଥାଏ, ସେହିପରି ଭଗବତ୍ ଗୁଣ ଶ୍ରବଣ ତଥା ଧାରଣ ଦ୍ୱାରା ଦ୍ରବୀଭୂତ ନିର୍ମଳ, ନିଷକଳଂକ, ପରମ ପବିତ୍ର ଅନ୍ତଃକରଣର ଭଗବତ୍ ଉନ୍ମୁଖ ହୋଇଯିବା ବାସ୍ତବରେ ଉପାସନା, (ଭାଗବତ ୩/୨୯/୧୧) ।

ଏଥିପାଇଁ ଆବଶ୍ୟକ ଚିତ୍ତ ସଂସାର ଏବଂ ତଦ୍‌ବିଷୟକ 'ରାଗଦ୍ୱେଷ'ରୁ ମୁକ୍ତ ହୋଇଯିବ । ଶାସ୍ତ୍ରୋକ୍ତି ଦେଖନ୍ତୁ- 'ଦେବୋଭୂତ୍ୱା ଯଜେତ୍ ଦେବାନ୍ ନାଦେବୋ ଦେବ ମର୍ଚ୍ଚୟେତ୍' । ଯାହାଠାରେ ଦେବତ୍ୱ ରହିଛି ସେ ହିଁ ଦେବ ପୂଜାର ଅଧିକାରୀ । ଯାହାଠାରେ ଦେବତ୍ୱର ମାତ୍ରା ଯେଉଁ ପରିମାଣରେ ତାକୁ ଦେବ ପୂଜାର ଫଳ ସେହି ହାରରେ ହିଁ ପ୍ରାପ୍ତ ହେବ । ସୁତରାଂ ଉପାସକକୁ ଭଗବତ୍ ଉପାସନା ନିମିତ୍ତ ଅନ୍ୟ ନ'କାରାତ୍ମକ କାମ, କ୍ରୋଧ, ଈର୍ଷା ଇତ୍ୟାଦି ସହିତ 'ରାଗ- ଦ୍ୱେଷ' ଅଭିମାନକୁ ତ୍ୟାଗ କରି ଆନ୍ତରିକ ଶୁଦ୍ଧି ହେବା ଉଚିତ୍ । ଏଥିସହିତ ଶାସ୍ତ୍ରୋକ୍ତ ବାହ୍ୟ ଶୁଦ୍ଧି ମଧ୍ୟ ପ୍ରୟୋଜନ ।

**୧୦୬**

## ଗୃହସ୍ଥାଶ୍ରମ-

ଗୃହସ୍ଥାଶ୍ରମ ହେଉଛି ଦ୍ୱିତୀୟ ଆଶ୍ରମ । (ପ୍ରଥମ ବ୍ରହ୍ମଚର୍ଯ୍ୟାଶ୍ରମ) ଯହିଁରେ ଲୋକେ ବିବାହ ସଂସ୍କାର ମାଧ୍ୟମରେ ଗୃହସ୍ଥ ଧର୍ମକୁ ପାଳନ କରିଥାଏ । ବିବାହ ସଂସ୍କାର ପିତୃଋଣରୁ ଅଋଣୀ ହେବା ପାଇଁ କରାଯାଏ । କାରଣ ମନୁଷ୍ୟ ତିନି ଋଣରେ ଋଣି ହୋଇ ଜନ୍ମ ହୋଇଥାଏ । ଯଥା- ଦେବଋଣ, ଋଷିଋଣ, ପିତୃଋଣ । ଏହି ଋଣକୁ ପରିଶୋଧ କରବା ନିମିତ୍ତ ହବନ, ଯଜ୍ଞାଦିଦ୍ୱାରା ଦେବଋଣ, ଅଧ୍ୟୟନ-ଅଧ୍ୟାପନାଦି ଦ୍ୱାରା ଋଷି ଋଣ ଏବଂ ବିବାହିତ ପତ୍ନୀଠାରୁ ପୁତ୍ରୋତ୍ପତ୍ତି ଆଦି ଦ୍ୱାର ପିତୃଋଣ ପରିଶୋଧ ହୋଇଥାଏ । ମନୁଷ୍ୟ କର୍ମଯୋନି ହେବା କାରଣରୁ ତା' ଉପରେ ଏହି ତିନି ଋଣ ଲାଗୁ ହୁଏ, ଇତର ଯୋନି ଭୋଗ ଯୋନି ହେତୁ ଏହା ପ୍ରଯୁକ୍ତ ହୁଏ ନାହିଁ ।

ବିବାହ ସଂସ୍କାର ଆମର ବ୍ୟକ୍ତିଗତ ତଥା ସାମାଜିକ ଜୀବନକୁ ସୁବ୍ୟବସ୍ଥିତ ସ୍ଥିତିରେ ରଖିବାପାଇଁ ଏକ ମହତ୍ତ୍ୱ ପୂର୍ଣ୍ଣ ବ୍ୟବସ୍ଥା । ଏହାଦ୍ୱାରା ସ୍ତ୍ରୀ ପୁରୁଷ ସଭ୍ୟ ହୋଇଥାନ୍ତି, ଧର୍ମାତ୍ମା ହୋଇଥାନ୍ତି । ଅତଃ ବିବାହ ସଂସ୍କାରର ମୁଖ୍ୟ ଉଦ୍ଦେଶ୍ୟ ସଂତାନ ଉତ୍ପନ୍ନ କରିବା । ସେମାନଙ୍କୁ ଉପଯୁକ୍ତ ସଂସ୍କାର ପ୍ରଦାନ କରି ନିବୃତ୍ତି ମାର୍ଗକୁ ଘେନିଯିବା, ଯଦ୍ୱାରା ସେମାନେ ମୋକ୍ଷ ପ୍ରାପ୍ତି କରି ମନୁଷ୍ୟ ଜୀବନକୁ ଧନ୍ୟ କରିପାରିବେ । ଆଦର୍ଶ ଗୃହସ୍ଥାଶ୍ରମରେ ଥିବା ଦମ୍ପତ୍ତି (ପରିବାର) ଅନ୍ୟ ଆଶ୍ରମକୁ ଯିବାର ପ୍ରୟୋଜନ ବା କାହିଁ ?

'ଗୃହସ୍ଥାଶ୍ରମ ପଦସ୍ଥସ୍ୟ କିମନ୍ୟୈ କୃତ୍ୟ ମାଶ୍ରମୈଃ ।।"

(ମହାଭାରତ ଅନୁଶାସନ ଅଂ ୧୪୧)

**୧୦୭**

କୁରୁକ୍ଷେତ୍ରର ରଣ କ୍ଷେତ୍ରରେ ମହାଭାରତ ଯୁଦ୍ଧ ଆରମ୍ଭ ହେଉଥିଲା । ଉଭୟ ପକ୍ଷ କୌରବ ପାଣ୍ଡବ ସେନା ସୁସଜ୍ଜିତ । ଭୟାବହ ଯୁଦ୍ଧ ହେବାର ସଂଭାବନା । ଶତ୍ରୁ ପକ୍ଷରେ ଗୁରୁ, ସଖା, ସଂବଂଧିଙ୍କୁ ରଣକ୍ଷେତ୍ରରେ ଦେଖି ମୋହ ବଶ ହୋଇ ଅର୍ଜୁନ କାତର ହୋଇଗଲେ । ଯୁଦ୍ଧ କରିବେ କି ନ କରିବେ ଦ୍ୱନ୍ଦ୍ୱ ? ନିଜ

ମାତୃଭୂମି ପାଇଁ ତାଙ୍କର କର୍ତ୍ତବ୍ୟ କ'ଣ ? ଯୁଦ୍ଧରେ କେତେ ବିପୁଳ ହାନି ହେବ, କେତେ ନରସଂହାର ହେବ, ଏ ପ୍ରଶ୍ନ ତାଙ୍କ ମନକୁ ବିକ୍ଷୁବ୍ଧ କରୁଛି ।

ଦ୍ୱନ୍ଦ୍ୱାତ୍ମକ ସ୍ଥିତିରେ ମୋହ ଆବରଣ ତାଙ୍କ ଉପରେ ଛାଇ ଯାଇଛି । ଏ ଅବସ୍ଥାକୁ ଦେଖି, ଜାଣିପାରି ଯୋଗେଶ୍ୱର ଶ୍ରୀକୃଷ୍ଣ ତାକୁ ଏକ ଅମୃତମୟ ଉପଦେଶ ଦେଲେ । ଶ୍ରୀକୃଷ୍ଣଙ୍କ ଏ ଶବ୍ଦ ଯୁଗଯୁଗକୁ ପ୍ରେରଣାର ଉତ୍ସ ହୋଇ ରହିଛି । ଅସଂଖ୍ୟ କବି ଏହି ଅମୂଲ୍ୟ ଶବ୍ଦରୁ ନିତ୍ୟ ନୂତନ ପ୍ରେରଣା, ସାହସ, ଧୈର୍ଯ୍ୟ ଏବଂ ନବୀନ ଶକ୍ତି ପ୍ରାପ୍ତ ହୋଇଛନ୍ତି । ଆପଣ ଏହି ଶବ୍ଦକୁ ମନ, ବଚନ ଏବଂ କର୍ମରେ ଧାରଣ କରନ୍ତୁ । ଅର୍ଜୁନକୁ ଭଗବାନଙ୍କ ପ୍ରେରଣା ହେଲା-

"କ୍ଳୈବ୍ୟଂ ମା ସ୍ମ ଗମଃ ପାର୍ଥ ନୈତତ୍ତ୍ୱ ୟ୍ୟୁପ ପଦ୍ୟତେ
କ୍ଷୁଦ୍ରଂ ହୃଦୟ ଦୌର୍ବଲ୍ୟଂ ତ୍ୱକ୍ତ୍ୱୋତ୍ତିଷ୍ଠ ପରଂତପ ॥"

(ଗୀତା ୨/୩)

ଅର୍ଥାତ୍, ହେ ଅର୍ଜୁନ ! ତୁମେ ହୀନ ନୁହଁ । ତୁମେ ଅସମର୍ଥ ନୁହଁ, ତୁମେ କାପୁରୁଷ ନୁହଁ । ଶରୀର, ମନ, ଆତ୍ମାରେ କୌଣସି ପ୍ରକାର ଦୁର୍ବଳ ନୁହଁ । ତୁମେ ଅମୃତ ସଂତାନ । ସେହି ବ୍ୟକ୍ତି ଯେ ସତ୍, ଚିତ୍, ଆନନ୍ଦ ସ୍ୱରୂପ, ଅଜର ଅମର, କେବେ କ୍ଷୟ ହେବାର ନୁହେଁ । ତୁମେ ଆତ୍ମତେଜର କେନ୍ଦ୍ର । ତୁମେ ମୋହ, ଦ୍ୱନ୍ଦ୍ୱର ଆବେଗରେ ଆସି ଆପଣାକୁ ଦୁର୍ବଳ, କାପୁରୁଷ ବୁଝୁଛ । ବ୍ୟର୍ଥରେ ତୁମେ ନିଜେ ନିଜକୁ କ୍ଷୁଦ୍ର ବୁଝି (ଧରିନେଇ) ଭୟଭୀତ ହେଉଛ ।

ହୃଦୟର ସକଳ ଦୁର୍ବଳତାକୁ ତ୍ୟାଗ କରିଦିଅ । ମନରୁ କାଳ୍ପନିକ ଶତ୍ରୁମାନଙ୍କୁ ସବୁ ସମୟ ପାଇଁ କାଢ଼ି ଫିଙ୍ଗିଦିଅ । ବ୍ୟର୍ଥ ଦୁର୍ବଳତାକୁ ପରିହାର କର । ସଂକଟକୁ ପୂରା ସାହସ ସହ ସମ୍ମୁଖୀନ ହୁଅ । ସୈନିକର ମାର୍ଗରେ ଦୃଢ଼ ହୁଅ । ଏହି ଶରୀର ନାଶବାନ୍ । କିନ୍ତୁ ତୁମର ଆତ୍ମା ଅଜର ଅମର ।

'ଆମ ବ୍ୟାବହାରିକ ଜୀବନରେ ସଫଳତା ଦିଗରେ ଏହାର ଭୂମିକା ଅତୁଳନୀୟ ।'

(ରାମଚରଣ ମହେନ୍ଦ୍ର)

### ୧୦୮

## ଅସାଧ ନୁହେଁ ଦୁଃସାଧ:-

ଯେ ପର୍ଯ୍ୟନ୍ତ ମନ ବିଲୀନ ହୋଇ ନଥାଏ, ସେ ପର୍ଯ୍ୟନ୍ତ ବାସନାର ସର୍ବଥା ବିନାଶ ହୁଏ ନାହିଁ, ସେ ଯାବତ୍ ଚିତ୍ତ ଶାନ୍ତ ହୁଏ ନାହିଁ । ଯେ ଯାବତ୍ ପରମାତ୍ମାଙ୍କ ଯଥାର୍ଥ ଜ୍ଞାନ ହୋଇ ନଥାଏ, ସେ ପର୍ଯ୍ୟନ୍ତ ଚିତ୍ତର ଶାନ୍ତି କାହିଁ, ଏବଂ ଯେ ଯାବତ୍ ଚିତ୍ତର ଶାନ୍ତି ନ ହୋଇଛି, ସେ ଯାବତ୍ ପରମାତ୍ମାତତ୍ତ୍ୱର ଯଥାର୍ଥ ଜ୍ଞାନ ହୁଏ ନାହିଁ । ଯେ ଯାବତ୍ ବାସନାର ସର୍ବଥା ନାଶ ନ ହୋଇଛି, ସେ ଯାବତ୍ ତତ୍ତ୍ୱ ଜ୍ଞାନ କେଉଁଠୁ ହେବ ? ଯେବେ ତତ୍ତ୍ୱଜ୍ଞାନ ନ ହୋଇଛି ସେ ଯାବତ୍ ବାସନାର ସର୍ବଥା ବିନାଶ ହେବ ନାହିଁ । ଏଥିପାଇଁ ପରମାତ୍ମାଙ୍କ ଯଥାର୍ଥ ଜ୍ଞାନ, ମନୋନାଶ ଏବଂ ବାସନାକ୍ଷୟ ଏ ତିନି ହିଁ ଗୋଟିଏ ଅନ୍ୟର କାରଣ । ଅତଃ ଏ ଦୁଃସାଧ, କିନ୍ତୁ ଅସାଧ ନୁହଁ । ବିଶେଷ ପ୍ରଯତ୍ନ କରିବା ଦ୍ୱାରା ଏହି ତିନିକାର୍ଯ୍ୟ ସିଦ୍ଧି ହୋଇଥାଏ ।

(ଯୋଗବାଶିଷ୍ଠ)

### ୧୦୯

## ମାତା ପିତାଙ୍କ ପ୍ରତି ବିହିତ କର୍ତ୍ତବ୍ୟ:

"ସ୍ୱସ୍ତି ମାତ୍ର ଉତ ପିତ୍ରେ ନୋଅସ୍ତୁ ।" (ଅଥର୍ବ ୧/୩୧/୪) ।

ଆପଣାର ମାତା ଏବଂ ପିତାଙ୍କ ପ୍ରତି ଆମ ସମସ୍ତଙ୍କର ସ୍ୱସ୍ତିମୟ, ସଦ୍‌ଭାବ, ପ୍ରଶସ୍ତ ଆଚରଣ ହେବା ବିଧେୟ । ଯଦ୍ୱାରା ସେମାନେ ସ୍ୱଗୃହସ୍ଥିତ ପ୍ରତ୍ୟକ୍ଷ ଦେବରୂପ ମାତା ପିତା ସଦୈବ ସଂତୁଷ୍ଟ ଏବଂ ପ୍ରସନ୍ନ ହେବେ । ଆମକୁ ଶୁଭାଶୀର୍ବାଦ ଦେଇ ପାରିବେ । ଅର୍ଥାତ୍ ବୃଦ୍ଧ ମାତା ପିତାଙ୍କୁ କଦାପି ଉପେକ୍ଷା କରାଯାଇପାରିବ ନାହିଁ । ପ୍ରତ୍ୟୁତ ତାଙ୍କ ଅଭୀଷ୍ଟ ଦେବବତ୍ ପରିଚର୍ଯ୍ୟା କରିବା ଉଚିତ୍ । ଅତଃ ପ୍ରମାଦ ବଶଃ ବା ଉଚ୍ଛୃଙ୍ଖଳା ବଶ ତାଙ୍କ ସହ କଷ୍ଟଜନକ ଅନିଷ୍ଟ ବ୍ୟବହାର କେବେ ହେଁ କରାଯିବା ଅନୁଚିତ ।

ବେଦ ଭଗବାନଙ୍କ ଏହି ସଦୁପଦେଶ ଏପରି ଶୁଭ ଭାବନା ସଦୈବ ସ୍ମୃତିରେ ରଖିବା ଉଚିତ୍ ।

ଯଦା ପିତେବ ମାତରଂ ପୁତ୍ରଃ ପ୍ରମୁଦିତୋ ଧୟନ୍
ଏତତ୍ତଦଗ୍ନେ ଅନୃଣୋ ଭବାଭ୍ୟହତୌ ପିତରୌ ମୟା ।
(ଶୁ. ଯ. ୯୯/୧୧)

ଯେବେ ମୁଁ ଛୋଟ ଅସମର୍ଥ ଶିଶୁ ଥିଲି, ସେ ସମୟରେ ଯେଉଁ ବିପୁଳ ସ୍ନେହମୟୀ ମାତାଙ୍କ ମଧୁର୍ଯ୍ୟମୟୀ କୋଳରେ ଖେଳି ପ୍ରମୁଦିତ ହୋଇ ଯାହାଙ୍କ ଅମୃତମୟ ସ୍ତନ୍ୟ ପାନ କରି ପାଦ- ଆଘାତ ଦ୍ୱାରା ତାଙ୍କୁ ପୀଡ଼ିତ କରିଥିଲି, ଏବେ ମୁଁ ତାଙ୍କ ଲାଳନ ପାଳନାଦି ଦ୍ୱାରା ବଡ଼ ହୋଇଯାଇଛି, ଏବଂ ସେ ମୋର ପୂଜନୀୟ ଜନକ ଜନନୀ ବୃଦ୍ଧ ଏବଂ ଅଶକ୍ତ ହୋଇଯାଇଛନ୍ତି । ଅତଃ ମୋ' ଦ୍ୱାରା ସେହି ବଂଦନୀୟ ମାତା ପିତା କଦାପି କୌଣସି ପ୍ରକାରେ ପୀଡ଼ିତ (ବ୍ୟଥିତ) ନ ହୁଅନ୍ତୁ । ପ୍ରତ୍ୟୁତ ପ୍ରଶସ୍ତ ସେବା ସତ୍କାର ଆଦି ଦ୍ୱାରା ସେ ସଦା ସଂତୁଷ୍ଟ ହୋଇ ରୁହନ୍ତୁ । ସେହିପରି ହେ ପରମାତ୍ମନ୍! ମୁଁ ତାଙ୍କ ସେବା ଏବଂ ପ୍ରସନ୍ନତା ଦ୍ୱାରା ଅରଣ (ଋଣଭାର ନିବାରଣ) ସଂପାଦନ କରୁଅଛି ।

(ସ୍ୱାମୀଜୀ ମହେଶ୍ୱରାନନ୍ଦଜୀ ମହାରାଜ, ମହାମଣ୍ଡଳେଶ୍ୱର)

୧୧୦

ଭଗବାନ୍ ଶଂକରଙ୍କ ମସ୍ତକ ନିଶ୍ରୁତ ଗଂଗା ସକଳ ପାପହରଣକାରୀ ଓ ଶୁଭକାରିଣୀ । ସେ ପବିତ୍ରକୁ ମଧ୍ୟ ପବିତ୍ର କରିଥାନ୍ତି ଏବଂ ମଂଗଳ ପଦାର୍ଥର ମଧ୍ୟ ମଂଗଳକାରିଣୀ । ଯେ ଶତ ଯୋଜନ ଦୂରରୁ ଗଂଗା, ଗଂଗା, ଉଚ୍ଚାରଣ କରେ, ସେ ସମସ୍ତ ପାପରୁ ମୁକ୍ତ ହୋଇ ବିଷ୍ଣୁଲୋକକୁ ପ୍ରାପ୍ତ ହୁଏ । ଗଂଗାରେ ସ୍ନାନ, ଜଳର ପାନ ଏବଂ ତହିଁରେ ପିତରଙ୍କୁ ତର୍ପଣ କରିବାରେ ମହାପାତକ ରାଶିର ପ୍ରତିଦିନ କ୍ଷୟ ହୋଇଥାଏ । ତପସ୍ୟା, ଯଜ୍ଞ, ନାନାପ୍ରକାର ବ୍ରତ ତଥା ପୁଷ୍କଳ ଦାନ କରିବା ଦ୍ୱାରା ଯେଉଁ ଗତି ପ୍ରାପ୍ତ ହୋଇଥାଏ, ଗଂଗା ସେବନରେ ମନୁଷ୍ୟ ସେହି ଗତିକୁ ପ୍ରାପ୍ତ କରେ । ଗଂଗାଙ୍କ ନାମ ଲେଶମାତ୍ର ପାପକୁ ଧୋଇଦିଏ, ଦର୍ଶନ ମାତ୍ରକେ କଲ୍ୟାଣ ପ୍ରଦାନ କରିଥାନ୍ତି ତଥା ସ୍ନାନ କରିବା ଏବଂ ଜଳ ପାନ ଦ୍ୱାରା ସାତ ପୁରୁଷକୁ ପବିତ୍ର କରିଥାନ୍ତି । (ପଦ୍ମପୁରାଣ)

ଭୌତିକ ଜଗତ ପାଇଁ ଗଂଗା ଏକ ଭୌତିକ ସାଧନ କିନ୍ତୁ ଏହି ଦେଶର ସଂତାନମାନଙ୍କ ପାଇଁ ଏକ ମହାନ୍ ଆଧ୍ୟାତ୍ମିକ ସାଧନ । ଗଂଗା ଉପରେ ଆଶ୍ରିତ

ମନୁଷ୍ୟ କେବଳ ଭୌତିକ ହୋଇ ରହେ ନାହିଁ । ତା'ର ବୁଦ୍ଧି, ବିଚାର, ବିବେକ ଊର୍ଦ୍ଧ୍ୱଗାମୀ ହୋଇଥାଏ । ତନ୍ମଧ୍ୟରେ ବୈଶ୍ୱିକ ଭାବନା ପ୍ରବିଷ୍ଟ ହୁଏ । ଗଂଗା ସେବନରେ ତା'ର ଭାବନା ପ୍ରସାଦିତ ହୁଏ । ଏଥିପାଇଁ କୋଟି କୋଟି ଭାରତୀୟଙ୍କ ନିମିତ୍ତ ଗଂଗା ମାତା, ଧରିତ୍ରୀ ପରି ପୋଷକ ଏବଂ ଅପକର୍ମ ଉପରୁ ଉପରକୁ ଉଠାଇଥିବା ପରମେଶ୍ୱର ରୂପରେ କୈବଲ୍ୟ ଏବଂ ମୋକ୍ଷଦାତ୍ରୀ ମଧ୍ୟ ହୋଇଥାଏ ।

୧୧୧

ଅଦ୍ୱୈତ ବିଚାର:-

ଆଚାର୍ଯ୍ୟ ଶଙ୍କର (ଆଦି ଶଙ୍କରାଚାର୍ଯ୍ୟ) ବିଶୁଦ୍ଧ ଜ୍ଞାନାତ୍ମା ପରଂବ୍ରହ୍ମରେ ନିତ୍ୟନିଷ୍ଠ ହୋଇ ଯାବଜ୍ଜୀବନ ଅଦ୍ୱୈତ ହିଁ ଦର୍ଶନ କରିଥିଲେ । ଦ୍ୱୈତରେ ଅଶିକ୍ଷା, ଅବିଦ୍ୟା, ମୋହ, ଶଂସୟ, ଅଜ୍ଞାନ, ଅଶୁଦ୍ଧି ଏବଂ ଭୟାଦି ଦୋଷ ନିତ୍ୟ ସନ୍ନିହିତ । ଶିକ୍ଷାଦିରୁ ପରମାତ୍ମାଙ୍କୁ ପ୍ରାପ୍ତି କରିବା ବିନା, ଦର୍ଶନ ବିନା, ଭ୍ରମ, ଅଜ୍ଞାନ, ଅଶିକ୍ଷାର ନିବୃତ୍ତି ହେବା ବିନା ସୁଖ ଶାନ୍ତି ଅସଂଭବ ।

ନାସ୍ତି ବୁଦ୍ଧିରଯୁକ୍ତସ୍ୟ ନ ଚାଯୁକ୍ତସ୍ୟ ଭାବନା
ନ ଚାଭାବୟତଃ ଶାନ୍ତିରଶାନ୍ତସ୍ୟ କୁତଃ ସୁଖମ୍ ।
ନାୟଂ ଲୋକୋଽସ୍ତି ନ ପରୋ ନସୁଖଂ ସଂଶୟାତ୍ମନଃ ॥
(ଗୀତା- ୨/୬୬, ୪/୪୦)

ସମସ୍ତ ଗୀତାର ମଧ୍ୟ ଏହା ଅନ୍ତିମ ନିର୍ଦ୍ଦେଶ । ହଜାରେ ଭାଷା, କଳା ବିଜ୍ଞାନ, ଡିଲିଟ୍, ଡି.ଏସ୍.ସି ଉପାଧି ହେଉଛି ମାୟାମୟ । କିନ୍ତୁ ଆଚାର୍ଯ୍ୟ ପ୍ରବର ଭଗବତ୍ ଦର୍ଶନ ବା ବିଶୁଦ୍ଧ ଜ୍ଞାନକୁ ନିତ୍ୟ ସାକ୍ଷାତ୍‌କାରକୁ ହିଁ ସର୍ବୋପରି ସଫଳତା ମାନିଅଛନ୍ତି, ଉପାଧିଭାବେ ବିଚାରିଛନ୍ତି, ଯାହା ଅତ୍ୟନ୍ତ କଠିନ । ଏହାକୁ ଜ୍ଞାନୀଜନ ଜାଣନ୍ତି, ନିର୍ଯ୍ୟାସ ରୂପେ ଏହା ଶାସ୍ତ୍ରସିଦ୍ଧ । କିନ୍ତୁ ବିଶେଷ କରି ତାଙ୍କର ତାତ୍ତ୍ୱିକ ଦୃଷ୍ଟିକୋଣରୁ ସେ ଜଗତ୍‌ଗୁରୁ । ଏହା ଦ୍ୱାରା ଭାରତର ଶିର ସର୍ବୋଚ୍ଚ ।

୧୧୨

ମଂଗଳମୟ ଶିବ:-

ଭଗବାନ୍ ଭୂତଭାବନ ଶ୍ରୀ ବିଶ୍ୱନାଥଙ୍କ ମଂଗଳମୟ ନାମର ମହାତ୍ମ୍ୟ ଏବଂ ନାମାନୁକୁଳ ଚରିତ୍ରର ବର୍ଣ୍ଣନ ବେଦ, ଉପନିଷଦ, ଶିବପୁରାଣ ତଥା ସ୍କନ୍ଦ, କୂର୍ମାଦି

ଅନ୍ୟ ବାରଗୋଟି ମହାପୁରାଣରେ ବିସ୍ତାରିତ । ତାହାର ଶ୍ରବଣ, ମନନ ଦ୍ୱାରା ସଭିଙ୍କ ପରମ ମଂଗଳ ହୁଏ । ତାଙ୍କ ପାବନ ଚରିତ୍ରରୁ ପ୍ରାଣୀକୁ ନୈତିକ, ସାମାଜିକ, କୁଟୁମ୍ବିକ ଆଦି ଅନେକ ପ୍ରକାର ଶିକ୍ଷା ମଧ୍ୟ ପ୍ରାପ୍ତ ହୋଇଥାଏ । ଗୋଟିଏ ଦୃଷ୍ଟାନ୍ତ ଦେଖନ୍ତୁ- ସାଗର ମନ୍ଥନ ସମୟରେ ସ୍ୱୟଂ ଆପେ (ଭଗବାନ୍ ବିଷ୍ଣୁଙ୍କ ସହ ପରାମର୍ଶ କରି) ବାସୁକୀ ନାଗର- ମୁଖ ପ୍ରସୂତ ଘନୀଭୂତ ବିଷପୁଂଜ କାଳକୂଟକୁ ପାନ କରିନେଲେ ଏବଂ ଦେବତାମାନଙ୍କୁ ଅମୃତ ପ୍ରଦାନ କଲେ । ରାଷ୍ଟ୍ରନେତା, ସମାଜ ଏବଂ କୁଟୁମ୍ବର ସ୍ୱାମୀର ମଧ୍ୟ ଏହି କର୍ତ୍ତବ୍ୟ । ଉତ୍ତମବସ୍ତୁ ରାଷ୍ଟ୍ରର ଜନସାଧାରଣଙ୍କୁ ଦେବା ଉଚିତ୍ । ଆପଣା ପାଇଁ ପରିଶ୍ରମ, ତ୍ୟାଗ ତଥା ବିବିଧ ପ୍ରକାର କଷ୍ଟକୁ ରଖିବା (ଭୋଗିବା) ଦରକାର । ବିଷକୁ ଅନ୍ୟକୁ ଦିଆଯାଇଥିଲେ ବିଶ୍ୱ ଧ୍ୱଂସ ହୋଇଥାନ୍ତା । ବିଷ ପାନକରି କଣ୍ଠରେ ତାହାକୁ ସ୍ଥାପନ କଲେ, ଏଣୁ ବିଷ ଏବଂ କାଳିମା ମଧ୍ୟ ତାଙ୍କ ପାଇଁ ଭୂଷଣ ହୋଇଗଲା ।

"ଯଚ୍ଚକାର ଗଳେନୀଳଂ ତଚ୍ଚ ସାଧୋର୍ବିଭୂଷଣମ ॥"

(ଶ୍ରୀମଦ୍ ଭାଗବତ ୮/୭/୪୩)

୧୧୩

## ଆଦର୍ଶ ଶିକ୍ଷା:-

ଆର୍ଯ୍ୟ ସଂସ୍କୃତିର ଦର୍ଶନ ଅନୁସାରେ ଶିକ୍ଷାର ଉଦ୍ଦେଶ୍ୟ ହେଉଛି, ଏହା ଦ୍ୱାରା ଇହଲୋକରେ ସର୍ବାଂଗୀନ (ଶାରୀରିକ, ମାନସିକ, ସାଂପ୍ରତିକ, ନୈତିକ) ଅଭ୍ୟୁଦୟ ଏବଂ ପରଲୋକରେ ପରମ ନିଃ-ଶ୍ରେୟସ ମୋକ୍ଷ ପ୍ରାପ୍ତି । ଋଷିମାନଙ୍କ ଦୃଷ୍ଟିରେ ବିଦ୍ୟା ହେଉଛି ତାହା, ଯାହା ଆମକୁ ଅଜ୍ଞାନ ବନ୍ଧନରୁ ମୁକ୍ତ କରିଦେବ- 'ସା ବିଦ୍ୟା ଯା ବିମୁକ୍ତୟେ' । ଭଗବାନ୍ ଶ୍ରୀକୃଷ୍ଣ ଗୀତାରେ 'ଅଧ୍ୟାତ୍ମ ବିଦ୍ୟା ବିଦ୍ୟାନାମ୍' କହି ଏହି ସିଦ୍ଧାନ୍ତକୁ ସମର୍ଥନ କରିଅଛନ୍ତି । ଏହି ଉଦ୍ଦେଶ୍ୟରେ ଆର୍ଯ୍ୟ-ପୂତାତ୍ମା, ସମଦର୍ଶୀ, ତ୍ରିକାଳଜ୍ଞ ଋଷିମାନେ ଚାରି ଆଶ୍ରମ- (ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଏବଂ ସନ୍ନ୍ୟାସ)ର ବ୍ୟବସ୍ଥିତ ବ୍ୟବସ୍ଥା ନିର୍ଦ୍ଧାରଣ କରିଥିଲେ । ବ୍ରହ୍ମଚର୍ଯ୍ୟର କଠୋର ନିୟମର ପାଳନ କରି ବ୍ରହ୍ମଚାରୀ ବିଦ୍ୟାର୍ଥୀ ଯେବେ ସଂଯମର ବ୍ୟବହାରିକ ଶିକ୍ଷା ସହିତ ଲୌକିକ ଓ ପାରଲୌକିକ କଲ୍ୟାଣକାରୀ ବିଦ୍ୟାକୁ ଅଧ୍ୟୟନ ପୂର୍ବକ ସମସ୍ତ ପ୍ରକାର, ମନ, ବଚନ, କ୍ରିୟାରେ ସୁସ୍ଥ, ସଂତୁଳିତ ତଥା ସଂଯମୀ ହୋଇ ଗୁରୁକୁଳରୁ ବାହାରେ, ତେବେ ଗୃହସ୍ଥ ଆଶ୍ରମରେ ପ୍ରବେଶ କରି କ୍ରମଶଃ ସଂଯମମୟ,

ସେବାମୟ, ତ୍ୟାଗମୟ, ଜୀବନରେ ଆତ୍ମକଲ୍ୟାଣ ସହ ସମାଜ ଏବଂ ରାଷ୍ଟ୍ରର କଲ୍ୟାଣକାମୀ ହୋଇଥାଏ । ଶେଷରେ ବାନପ୍ରସ୍ଥାଶ୍ରମରେ ସମାଜ କଲ୍ୟାଣରେ ବ୍ରତୀ ହୋଇ ସନ୍ନ୍ୟାସ ଅବସ୍ଥାରେ ସର୍ବତ୍ୟାଗ କରି ପରମାତ୍ମାଙ୍କ ଧ୍ୟାନରେ ନିମଗ୍ନ ହୋଇଥାଏ ।

୧୧୪

ବାନପ୍ରସ୍ଥ:-

ବାନପ୍ରସ୍ଥ ମୁନି ସକଳ ପ୍ରକାର ସଂସ୍କାର ଦ୍ୱାରା ଶୁଦ୍ଧ ହୋଇ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ଗୃହାଦିର ଜଂଜାଳ ତ୍ୟାଗକରି ଗ୍ରାମ, ଜନପଦ, ବାହାରେ ଜନକୋଳାହଳ ରହିତ ଶାନ୍ତ ସ୍ଥାନରେ ନିବାସ କରିବ । ତ୍ରିକାଳ ସଂଧ୍ୟା ପୂର୍ବରୁ ସ୍ନାନ କରିବେ । ଗ୍ରାମକୁ ଯିବା ଅନୁଚିତ । ଆଶ୍ରିତ ଅତିଥିଙ୍କ ପରିଚର୍ଯ୍ୟା କରିବେ । ଜଂଗଲି ଫଳ ମୂଳ, ପତ୍ର, ଶାକରେ ଜୀବନ ନିର୍ବାହ କରିବେ । ପ୍ରାକୃତିକ, ଜଳ, (ଝରଣା, ଜଳାଶୟ) ବାୟୁ, ଜଂଗଲ ଉପଲବ୍ଧ ବସ୍ତୁ ସେବନ କରିବେ । ଆହାର ବିଚାର ସର୍ବଦା ସ୍ମରଣ ରଖିବେ । ଆଳସ୍ୟ ପରିହାର କରିବେ । ଯାହା କିଛି ଭୋଜନ ଦ୍ରବ୍ୟ- ଆଗନ୍ତୁକ ଅତିଥିଙ୍କୁ ପ୍ରଦାନ କରିବେ । ଦେବ- ଅତିଥି ସେବା ଅବ୍ୟାହତ ରଖିବେ । ଏହାପରେ ମୌନ ଅବଲଂବନ କରି ସ୍ୱୟଂ ଅନ୍ନଗ୍ରହଣ କରିବେ । ରାଗ- ଦ୍ୱେଷ ପରିହାର କରିବେ । ଦେବ, ଇଷ୍ଟ- ବ୍ରହ୍ମ ସମର୍ପିତ ହେବେ । ମନରେ କାହାରି ପ୍ରତି ସ୍ପର୍ଦ୍ଧା ରଖିବେ ନାହିଁ । ଇନ୍ଦ୍ରିୟ ସଂଯମ ପୂର୍ବକ ମିତ୍ର ଭାବରେ ଅପର ସହ ବାର୍ତ୍ତାଳାପ କରିବେ । କ୍ଷମାଶୀଳ ହେବେ । ଶ୍ମଶ୍ରୁ, କେଶ କର୍ତ୍ତନ କରିବେ ନାହିଁ । ନିତ୍ୟ ଅଗ୍ନିହୋତ୍ର ତଥା ସ୍ୱାଧ୍ୟାୟରେ ମନୋନିବେଶ କରିବେ । ଶରୀର- ମନ ସଦା ପବିତ୍ର ରଖିବେ । ଏକାନ୍ତ ବାସ ଦ୍ୱାରା ମନକୁ ଈଶ୍ୱରାଭିମୁଖୀ କରାଇବେ । ଏହିପରି ଉତ୍ତମ ଧର୍ମ ପାଳନକାରୀ ଜିତେନ୍ଦ୍ରିୟ- ବାନପ୍ରସ୍ଥୀ ସ୍ୱର୍ଗଲାଭକୁ ମଧ୍ୟ

୧୧୫

ସଂତୋଷ-

ଚାଣକ୍ୟ କହିଛନ୍ତି- 'ଶାନ୍ତି ସମ ତପସ୍ୟା ନାହିଁ, ସନ୍ତୋଷରୁ ବଳୀ ଧର୍ମ ନାହିଁ'

ଭାରତୀୟ ସଂସ୍କୃତି ତ ସଂତୋଷ ଉପରେ ହିଁ ଆଧାରିତ ବା କେନ୍ଦ୍ରିତ ।

ଶ୍ରମ-ସାଧନା ପରେ ଯାହା ମସ୍ତିଷ୍କରେ ସଂତୋଷ ଆସିଯାଏ, ଧରନ୍ତୁ ସେ ରାଜ୍ୟ-ରାଜମୁକୁଟ ପ୍ରାପ୍ତ କରିନେଲା । ସକ୍ରେଟିସଙ୍କ କଥନ କେତେ ଅର୍ଥପୂର୍ଣ୍ଣ- 'ସଂତୋଷ ପ୍ରାକୃତିକ ସଂପଦ, ଐଶ୍ୱର୍ଯ୍ୟ କୃତ୍ରିମ ଗରିବୀ' ।

ସନ୍ତୋଷ ସୁଖର ସବୁଠାରୁ ବଡ଼ ସାଧନା । ଯାହା ମସ୍ତିଷ୍କକୁ ନମ୍ର କରାଇବା ଦ୍ୱାରା ପ୍ରାପ୍ତ ହୁଏ । ମନରେ ସୁଖ ମାନିନେଲେ, ତେବେ ବିପୁଳ ବ୍ୟାଧି ମଧ କର୍ପୂର ପରି ଉଡ଼ିଯିବ ।

ଇଚ୍ଛାକୁ ସୀମିତ ରଖି ସଚ୍ଚା, ସାଧୁତା ସହ ଭରପୂର ଶ୍ରମ କର, ଫଳ ଚିନ୍ତା ନକରି ପରମେଶ୍ୱରଙ୍କ ଉପରେ ଛାଡ଼ି ଦିଅ । ପ୍ରତ୍ୟେକ ବ୍ୟକ୍ତିଙ୍କ ଠାରେ ସମାଜ-ଉପଯୋଗୀ ଭାବ ହେବା ଉଚିତ୍ । ଭଲ ଭାବରେ ବୁଝିନେବା ଯେ ସୁଖୀ ହେବାର ଅର୍ଥ ଅନ୍ୟକୁ ସୁଖୀ କରିବା ।

ମନ ବାଣୀ ଏବଂ କର୍ମରେ ଶୁଦ୍ଧ ବ୍ୟକ୍ତିତ୍ୱ ହିଁ ସଚ୍ଚା ସୁଖର ରସଧାରା ସଦୈବ ସ୍ନାନ କରିଥାଏ । ଆତ୍ମାରେ ସୁଖ ସୌନ୍ଦର୍ଯ୍ୟର ବିପୁଳ ବର୍ଷା ନିମନ୍ତେ ସନ୍ତୋଷ ଏକ ସଜଳ ମେଘ । ସୁଖ ଏବଂ ସଂତୋଷ ଏକ ସଂଗେ ଚାଲିଥାନ୍ତି । ସଂତୋଷ ହେଉଛି ମୂଳ, ସୁଖ ତାହାର ଫଳ, ଅଥବା ସଂତୋଷ ମେଘ ଏବଂ ସୁଖ ତହିଁରୁ ବର୍ଷି ଯାଉଥିବା ଜଳ ।




**ଅବତାର ବାଦ:-**

ଭାରତରେ ରାମ, କୃଷ୍ଣ, ବୁଦ୍ଧ ଏବଂ ମହାବୀର ସ୍ୱାମୀଙ୍କୁ ଈଶ୍ୱରଙ୍କ ଅବତାର ଭାବେ ଗ୍ରହଣ କରାଯାଇଛି । ଇହୁଦିମାନଙ୍କ ମଧରେ ମୂସା, ଖ୍ରୀଷ୍ଟିୟାନମାନଙ୍କର ଖ୍ରୀଷ୍ଟ ଏବଂ ମୁସଲମାନମାନେ ମହମ୍ମଦଙ୍କୁ ଈଶ୍ୱରଙ୍କ ପ୍ରତିନିଧି ମାନିଥାନ୍ତି ।

ସତପଥ ବ୍ରାହ୍ମଣରେ ଯେଉଁ ଜଳ ପ୍ରଳୟର କଥା ପ୍ରଦତ୍ତ, ଯହିଁରେ ମତ୍ସ୍ୟରୂପୀ ଭଗବାନଙ୍କ ଆଦେଶରେ ମନୁ ନିଜର ନୌକା ଉତ୍ତରଗିରିର ଉଚ୍ଚତମ ଶୃଂଗରେ ବାନ୍ଧି ଦେଇଥିଲେ । ଏହାକୁ ଜରଥୁସ୍ତ୍ର ଦୋହରାଇଛନ୍ତି ଏବଂ ତହିଁରେ ପ୍ରତ୍ୟେକ ପ୍ରାଣୀକୁ ଯୋଡ଼ି ଗୋଟିଏ ଗର୍ତ୍ତରେ ରଖାଯିବା କହିଛନ୍ତି । ଏହାର ନକଲ ଇହୁଦି, ଖ୍ରୀଷ୍ଟିୟାନ, ମୁସଲମାନ୍ Noah's are ଅଥବା ନୂହର କୌଣସି ସଂବଂଧ କରାଯାଇଛି ।

ମନୁଙ୍କୁ ମାନବ ସୃଷ୍ଟିର ଆଦିପୁରୁଷ ଭାବେ କଥିତ । ନୂହ ମଧ୍ୟ ମନୁଙ୍କର ରୂପାନ୍ତର । ନୂହଙ୍କର ଦୁଇ ପୁତ୍ର ସାମ ଓ ହାମ ସୂଚିତ । ଯହିଁରୁ ସାମଟିକ୍ ତଥା ହାମଟିକ୍ ଦୁଇଟି ଉପଜାତି ହେଲେ । ମନୁଙ୍କ ବଂଶରେ ମଧ୍ୟ ଚନ୍ଦ୍ରବଂଶ ଓ ସୂର୍ଯ୍ୟବଂଶ ସୃଷ୍ଟି ହେଲେ । ଚନ୍ଦ୍ରଙ୍କୁ ସୋମ ଓ ସୂର୍ଯ୍ୟଙ୍କୁ ହେମ କୁହାଯାଏ । ଆଶ୍ଚର୍ଯ୍ୟ ନୁହେଁ କି ଇହୁଦିମାନେ ସୋମକୁ ସାମ ଓ ହେମରୁ ହାମ କରି ଅଛନ୍ତି ।

(ଇନ୍ଦ୍ରଜିତଜୀ ଶର୍ମା)

୧୧୭

**ସ୍ୱାଧ୍ୟାୟ:-**

ସ୍ୱାଧ୍ୟାୟ ଶବ୍ଦ ଦୁଇଟି ଶବ୍ଦର ମିଳନରୁ ସୃଷ୍ଟ । ସ୍ୱ ଏବଂ ଅଧ୍ୟାୟ । ସ୍ୱ ର ଅର୍ଥ- ଆପଣା (ନିଜ) ଏବଂ ଅଧ୍ୟାୟର ଅର୍ଥ ଅଧ୍ୟୟନ କରିବା । ଅର୍ଥାତ୍ ଆତ୍ମସ୍ୱରୂପର ଅଧ୍ୟୟନ କରିବା ହିଁ 'ସ୍ୱାଧ୍ୟାୟ' । ଅତଃ ଆତ୍ମରମଣ କରିବା, ତଥା ଆତ୍ମରମଣରେ ସହାୟକ ସାହିତ୍ୟର ଅଧ୍ୟୟନ କରିବା ସ୍ୱାଧ୍ୟାୟର ପ୍ରମୁଖ ଅଂଗ । କେବଳ ସେହି ଶାସ୍ତ୍ରର ଅଧ୍ୟୟନ, ଯହିଁରେ ଆତ୍ମସ୍ୱରୂପର ବିବେଚନା କରାଯାଇଛି, ନିଜ ସ୍ୱରୂପର ବୋଧ କରାଯାଇଛି, ମନର ରାଗଦ୍ୱେଷ ଆଦି ବିକାରର ନିବାରଣରେ ସହାୟକ ହୋଇଥାଏ, ସ୍ୱାଧ୍ୟାୟରେ ସ୍ଥାନ ପାଇଥାଏ । ଯେଉଁ ଗ୍ରନ୍ଥ ବିଷୟ ବିକାରର ଉତ୍ତେଜକ, ପ୍ରେରକ ତଥା ବର୍ଦ୍ଧକ ହୋଇଥାଏ, ପତନର ଗର୍ତ୍ତରେ ପକାଇଥାଏ କାମ, କ୍ରୋଧ, ମଦ, ମୋହ ବୃଦ୍ଧି କରିଥାଏ, ଚିତ୍ତକୁ ଅଶାନ୍ତ ତଥା ଅଶୁଦ୍ଧ କରିଥାଏ, ତାହାର ଅଧ୍ୟୟନ ସ୍ୱାଧ୍ୟାୟ କ୍ଷେତ୍ରରେ କୌଣସି ସ୍ଥାନ ନାହିଁ ।

'ଶ୍ରୁତଂଚ୍ ସ୍ୱାଧ୍ୟାୟ ପ୍ରବଚନେଚ୍ । ସତ୍ୟଂଚ୍ ସ୍ୱାଧ୍ୟାୟ ପ୍ରବଚନେଚ୍ ॥'

ଏଠାରେ ସଦାଚାର, ସତ୍ୟ, ତପ, ଇନ୍ଦ୍ରିୟ ଦମନ, ମନର ଶମନ, ଆଦି ପ୍ରତ୍ୟେକ ସତ୍‌କାର୍ଯ୍ୟ ସହିତ ସ୍ୱାଧ୍ୟାୟ ତଥା ପ୍ରବଚନ ଉପରେ ଯୋର ଦିଆଯାଇଛି ।

ଉପନିଷଦରେ ଗୁରୁ ଶିଷ୍ୟକୁ ଉପଦେଶ ଦେଇଛନ୍ତି- '(୧) ସତ୍ୟଂ ବଦ, (୨) ଧର୍ମଂ ଚ୍ର, (୩) ସ୍ୱାଧ୍ୟାୟାନ୍ ମା' ପ୍ରମଦଃ ।' ଏଠାରେ ସତ୍ୟ ଭାଷଣ, ଧର୍ମ ଆଚରଣ ତଥା ସ୍ୱାଧ୍ୟାୟ ଉପରେ ଗୁରୁତ୍ୱ ଦିଆଯାଇଛି । ଏହା ସ୍ୱାଧ୍ୟାୟର ମହତ୍ତ୍ୱ ଦ୍ୟୋତକ ।

**୧୧୮**

ପ୍ରାଚୀନ ଶିକ୍ଷା:-

ବ୍ରହ୍ମବିଦ୍ୟା କ୍ଷେତ୍ରରେ କେତେକ ଋଷି 'ନାରାୟଣ'ଙ୍କୁ ଆଦି ଗୁରୁ ମାନି ପୁନଃ ବଶିଷ୍ଠ, ଶକ୍ତି, ପରାଶର, ବ୍ୟାସ, ଶୁକ ଗୌଡ଼ପାଦ ଆଦି ବିଶିଷ୍ଟ ଋଷି, ମହର୍ଷି, ମୁନି, ଆଚାର୍ଯ୍ୟଙ୍କୁ ହିଁ ଲୌକିକ- ଅଲୌକିକ ବିଦ୍ୟା କଳା, ବିଜ୍ଞାନର ପ୍ରବର୍ତ୍ତକ ଭାବେ ଗ୍ରହଣ କରିଥାନ୍ତି ।

ଅନାଦି କାଳରୁ ମାନବ ସମାଜ ଭାରତୀୟ ସଂସ୍କୃତି ଅନୁସାରେ ଗୁଣ, କର୍ମ ଓ ସ୍ୱଭାବ ଆଧାରରେ ଚାରିବର୍ଣ୍ଣ ଓ ଚାରି ଆଶ୍ରମରେ ବିଭକ୍ତ କରାଯାଇଛି । ଏଠାରେ ଗୁଣ- କର୍ମ ଏବଂ ସ୍ୱଭାବ ବ୍ୟକ୍ତିର ନୁହେଁ, ପରନ୍ତୁ ଜାତିଗତ । ଅର୍ଥାତ୍ ପିତୃ ପିତାମହଙ୍କ ପରଂପରାରୁ ମାନି ନିଆଯାଏ । ତାହା ହିଁ ବ୍ୟକ୍ତି ଶିକ୍ଷାର ନିର୍ଦ୍ଦେଶ ରହିଅଛି । ସେହିପରି ବ୍ରାହ୍ମଣକୁ ଯଜ୍ଞ- ଯାଗାଦି ସହିତ ବେଦ ତଥା ବେଦାନୁସାରେ ଶାସ୍ତ୍ର ମର୍ଯ୍ୟାଦା ଓ ପରଂପରା, ସଦାଚାର, ଧର୍ମଶାସ୍ତ୍ର କର୍ତ୍ତବ୍ୟ ଏବଂ ଅଧିକାରର ଶିକ୍ଷା ବିହିତ ଥିଲା । କ୍ଷତ୍ରିୟଙ୍କ ପାଇଁ ରାଷ୍ଟ୍ରରେ ସୁରକ୍ଷା ତଦର୍ଥ ଆବଶ୍ୟକ ଯୁଦ୍ଧ ଅସ୍ତ୍ର-ଶସ୍ତ୍ର ବିଦ୍ୟା ତଥା ଶାସନ ଓ ବ୍ୟବହାର ରାଜନୀତି- ସମାଜନୀତି ଏବଂ ଅଭିବ୍ୟକ୍ତି ରାଷ୍ଟ୍ର ହିତରେ ଉପଯୋଗୀ ଶିକ୍ଷା ବିହିତ ଥିଲା । ସେହିପରି ବୈଶ୍ୟ ନିମନ୍ତେ କୃଷି, ଗୋରକ୍ଷା, ବାଣିଜ୍ୟ ବ୍ୟାପାର ସଂବଂଧିତ ବିଦ୍ୟାର ଶିକ୍ଷା ତଥା ଶୂଦ୍ର ନିମନ୍ତେ ଶିଳ୍ପକଳା, ସ୍ଥାପତ୍ୟ, ଯାନ୍ତ୍ରିକୀ, ସ୍ୱର୍ଣ୍ଣାଦି ଧାତୁ ତଥା ରତ୍ନାଦିର ତକ୍ଷଣ ଏବଂ ଆଭୂଷଣ ନିର୍ମାଣର ଶିକ୍ଷା ବିଧାନ ହୋଇଅଛି ।

**୧୧୯**

ଏକାନ୍ତ ବାସ:-

ଭିଡ଼ରେ ବ୍ୟକ୍ତି ବହିର୍ମୁଖୀ ହୋଇଥାଏ । ଅନ୍ୟର ଦୋଷ ତା' ଆଖିରେ ପଡ଼େ । ଏକାନ୍ତରେ ବ୍ୟକ୍ତି ଅନ୍ତର୍ମୁଖୀ ହେବାର ଦେଖାଯାଏ । ଆତ୍ମନିରୀକ୍ଷଣ, ଆତ୍ମବିଶ୍ଳେଷଣ ତଥା ଆତ୍ମମୂଲ୍ୟାଙ୍କନ କରିଥାଏ । ଏକାନ୍ତରେ ବ୍ୟକ୍ତି ଅନ୍ତର୍ଯାତ୍ରା କରିଥାଏ । ଏହା ଏକାନ୍ତ ବ୍ୟକ୍ତିର ବାସ୍ତବ ଦର୍ପଣ । ଶାନ୍ତି ମଣିଷର ଭିତରୁ ଆସେ । ଶାନ୍ତି ପାଇଁ ବ୍ୟକ୍ତିକୁ ଶରୀର ଭାବରୁ ନୁହେଁ, ଆତ୍ମଭାବରେ ବଞ୍ଚିବାର କଳା ଶିଖିବାକୁ ହେବ । ଭଗବାନ୍ ଶ୍ରୀକୃଷ୍ଣଙ୍କ ବାଣୀ ହେଉଛି ଭିତରକୁ ଯିବା ତଥା ତଦ୍ୱାରା ବ୍ୟକ୍ତିର

ଜୀବନ ସମ୍ୟକ୍ ହେବା ହୋଇଥାଏ । 'ଆତ୍ମନ୍ୟେବାତ୍ମନା ତୁଷ୍ଟଃ'ର ପ୍ରବୃତ୍ତି ବିକଶିତ କରିବା ଉଚିତ୍ । ଏକାନ୍ତ ହିଁ ବାସ୍ତବ ଶାନ୍ତିର ଗଂଗା, ଯହିଁରେ ବୁଡ଼ ପକାଇ ଆମେ ଅଶାନ୍ତିରୁ ମୁକ୍ତ ହୋଇପାରିବା । 'ଅଶାନ୍ତସ୍ୟ କୁତଃ ସୁଖମ୍' । ଏକାନ୍ତରେ ବ୍ୟକ୍ତି ସହିତ କେବଳ ସ୍ୱ ହୋଇଥାଏ । ତା'ର ପରିଚୟ ହୋଇଥାଏ । ଶ୍ରୀକୃଷ୍ଣ କହିଛନ୍ତି, "ବାସ୍ତବ ଶାନ୍ତି ପ୍ରାପ୍ତ ପାଇଁ ବ୍ୟକ୍ତିକୁ କାମନା, ସ୍ପୃହା, ମମତା, ଅହଂକାର ତଥା ସମସ୍ତ ଲୌକିକ ଉପାଧିରୁ ମୁକ୍ତ ହେବାକୁ ପଡ଼ିବ ।" (ଗୀତା ୨/୭୧)

ପ୍ରତିଦିନ ପ୍ରାତଃ ସାୟଂ କାଳର ବିଜନ ଶାନ୍ତ ପରବେଶରେ ଚକ୍ଷୁ ମୁଦ୍ରିତ କରି କିଛିକ୍ଷଣ ବସନ୍ତୁ । କେବଳ ମୁଁ ଆତ୍ମା, ମୁଁ ଶୁଦ୍ଧ-ବୁଦ୍ଧ, ଆନନ୍ଦ ସ୍ୱରୂପ, ଏହିପରି ବିଚାର କରନ୍ତୁ । କେବଳ ଏତିକି ।

୧୨୦

## ନିତ୍ୟ ନଅ ଆବଶ୍ୟକ କର୍ମ-

ସାମାନ୍ୟ ଧାର୍ମିକ ବ୍ୟକ୍ତି ପାଇଁ ନଅଗୋଟି ଏପରି ଆବଶ୍ୟକ କର୍ମ ଯାହା ପ୍ରତ୍ୟେକ ବ୍ୟକ୍ତିକୁ ପ୍ରତିଦିନ କରିବା ବିଧି । ଏହାକୁ ନଅ କରଣୀୟ କର୍ମ କୁହାଯାଇପାରେ ।

(୧) ସଂଧ୍ୟା ପ୍ରାତଃ ସାୟଂ ଈଶ୍ୱର ବଂଦନା । (୨) ସ୍ନାନ- ଶାରୀରିକ ପବିତ୍ରତା ପାଇଁ ଏବଂ ସ୍ୱଚ୍ଛତା ନିମିତ୍ତ ସ୍ନାନ ଆବଶ୍ୟକ, (୩) ଜପ- କୌଣସି ମନ୍ତ୍ର ଜପ କରିବା । (୪) ହୋମ- ଦେବ ଋଣରୁ ମୁକ୍ତି ଏବଂ ବାତାବରଣ ଶୁଦ୍ଧତାପାଇଁ ହବନ ଯଜ୍ଞ କରିବା । (୫) ସ୍ୱାଧ୍ୟାୟ- ଋଷି ଋଣରୁ ମୁକ୍ତି ବା ଜ୍ଞାନର୍ଜନ ପାଇଁ ଭଗବତ୍ ଗ୍ରନ୍ଥ ଅଧ୍ୟୟନ । (୬) ଦେବ ପୂଜନ- ଆରାଧ୍ୟ ଦେବଙ୍କ ପୂଜା (୭) ବଳିବୈଶ୍ୱଦେବ- ଏକ ଏପରି ଯଜ୍ଞ ଯହିଁରେ ଖାଦ୍ୟ ପଦାର୍ଥ (ଭାତ, ରୁଟି)ର କିଛି ଭାଗ କରି ସଂକ୍ଷିପ୍ତ ହବନ ଏବଂ ସମସ୍ତଙ୍କ ନିମିତ୍ତ ଗ୍ରାସ ମାଟି ଉପରେ ପ୍ରାପ୍ତ କର୍ତ୍ତାଙ୍କ ନିମିତ୍ତ ରଖାଯିବ, ଏହା ସହିତ ପଂଚବଳି ଦିଆଯାଏ । ଯଦ୍ୱାରା ଗୋ, ଶ୍ୱାନ, କାକ, ଦେବାଦି ଏବଂ ପିପୀଲିକା ନିମିତ୍ତ ଅନ୍ନ ଦିଆଯାଏ । ଏହି ସମୟରେ କୌଣସି ଅତିଥି ଆସିଗଲେ ପ୍ରଥମେ ତାଙ୍କୁ ଭୋଜନ ଦେବା ବିଧି । (୮) ଅତିଥି ସେବା- 'ଅତିଥି ଦେବୋ ଭବ' ଉକ୍ତି ଏହି ଆବଶ୍ୟକ କର୍ମର ପୁଷ୍ଟି ସାଧନ କରିଥାଏ । (୯) ପୌଷ୍ଟିବର୍ଗର ଭରଣ ପୋଷଣ- ମାତା, ପିତା, ଗୁରୁ, ସେବକ ଆଦିଙ୍କୁ ଭୋଜନ ବସ୍ତ୍ରର ବ୍ୟବସ୍ଥା କରିବା ।

ବର୍ତ୍ତମାନ ହିଁ ମୂଲ୍ୟବାନ୍-

ଭୂତ(ଅତୀତ) ହେଉଛି ମୃତ । ତାହା କେବେ ଲେଉଟି ଆସିବ ନାହିଁ । ଭବିଷ୍ୟ ଯେତେ ସ୍ୱପ୍ନିଳ ମନୋହର ଅନିଶ୍ଚିତ ଏବଂ ଅଜନ୍ମା । ବିତି ଯାଇଥିବା ସମୟ ପାଇଁ ପାଶ୍ଚାତ୍ତାପ ତଥା ଭବିଷ୍ୟତର କଳ୍ପନାରେ ବ୍ୟକ୍ତି ଆପଣାର ବହୁମୂଲ୍ୟ ବର୍ତ୍ତମାନକୁ ନଷ୍ଟ କରିଦିଏ । ବର୍ତ୍ତମାନ ଜୀବନ୍ତ ତଥା ଶକ୍ତି ସଂଭାବନା ପୂର୍ଣ୍ଣ । ସଂସାରରେ ଯେଉଁ ବ୍ୟକ୍ତି ମହାନ୍ ହୋଇଛନ୍ତି, ସେମାନେ ‘ବର୍ତ୍ତମାନର ସୁବିନିଯୋଗ ପୂର୍ବକ ସଫଳତାର ଅଧିକାରୀ ହୋଇଛନ୍ତି । ବର୍ତ୍ତମାନ ଆପଣଙ୍କ ହାତରେ ରହିଛି । ସେ ଇଚ୍ଛାକରି ଏହାର ସଦୁପଯୋଗ କରି ନୂତନ ସଂଭାବନାକୁ ଆପଣାର କରିପାରିବ । ଅଥବା ନିଜର ଅଶେଷ କ୍ଷତି ସାଧନ କରିପାରିବ । ବର୍ତ୍ତମାନକୁ ସ୍ୱୀକାର କରି ହିଁ ଆମେ ଶ୍ରେଷ୍ଠତାକୁ ପ୍ରାପ୍ତ କରିପାରିବା । ଅତଃ ଆବଶ୍ୟକତା ହେଉଛି, ବର୍ତ୍ତମାନ ଜୀବନର ପ୍ରତ୍ୟେକ କ୍ଷଣକୁ, ଗଠନ ଦିଗରେ ସୃଜନ ମାର୍ଗରେ ତଥା ନୂତନତ୍ୱର ସନ୍ଧାନରେ ନିବିଷ୍ଟ ହେବା



# ଆତ୍ମାଷ୍ଟକମ୍

ମନୋବୁଦ୍ଧ୍ୟହଂକାରଚିତ୍ତାନି ନାହଂ
ନ ଚ ଶ୍ରୋତ୍ରଜିହ୍ୱେ ନ ଚ ଘ୍ରାଣନେତ୍ରେ ।
ନ ଚ ବ୍ୟୋମଭୂମିର୍ନ ତେଜୋ ନ ବାୟୁଃ
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥୧॥
ନ ଚ ପ୍ରାଣସଂଜ୍ଞୋ ନ ବୈ ପଞ୍ଚବାୟୁଃ
ନ ବା ସପ୍ତଧାତୁର୍ନ ବା ପଞ୍ଚକୋଶାଃ ।
ନ ବାକ୍ ପାଣି ପାଦଂ ନ ଚୋପସ୍ଥପାୟୁଃ
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥୨॥
ନ ମେ ଦ୍ୱେଷରାଗୌ ନ ମେ ଲୋଭମୋହୌ
ମଦୋ ନୈବ ମେ ନୈବ ମାତ୍ସର୍ଯ୍ୟଭାବଃ ।
ନ ଧର୍ମୋ ନ ଚାର୍ଥୋ ନ କାମୋ ନ ମୋକ୍ଷଃ
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥ ୩ ॥
ନ ପୁଣ୍ୟଂ ନ ପାପଂ ନ ସୌଖ୍ୟଂ ନ ଦୁଃଖଂ
ନ ମନ୍ତ୍ରୋ ନ ତୀର୍ଥଂ ନ ବେଦା ନ ଯଜ୍ଞାଃ ।
ଅହଂ ଭୋଜନଂ ନୈବ ଭୋଜ୍ୟଂ ନ ଭୋକ୍ତା
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥୪ ॥
ନ ମେ ମୃତ୍ୟୁଶଙ୍କା ନ ମେ ଜାତିଭେଦଃ
ପିତା ନୈବ ମେ ନୈବ ମାତା ନ ଜନ୍ମଃ ।
ନ ବନ୍ଧୁର୍ନ ମିତ୍ରଂ ଗୁରୁର୍ନୈବ ଶିଷ୍ୟଃ
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥ ୫ ॥
ଅହଂ ନିର୍ବିକଳ୍ପୋନିରାକାରରୂପୋ
ବିଭୁର୍ବ୍ୟାପ୍ୟ ସର୍ବତ୍ର ସର୍ବେନ୍ଦ୍ରିୟାଣାମ୍ ।
ସଦା ମେ ସମତ୍ୱଂ ନ ମୁକ୍ତିର୍ନ ବନ୍ଧଃ
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥ ୬ ॥
॥ ଇତି ଶ୍ରୀମତ୍ ଶଙ୍କରାଚାର୍ଯ୍ୟକୃତ ଆତ୍ମଷଟକମ୍ ସମ୍ପୂର୍ଣ୍ଣମ୍ ॥



# କୌପୀନପଞ୍ଚକମ୍

ବୋଦାନ୍ତବାକ୍ୟେଷୁ ସଦା ରମୋନ୍ତ ଭିକ୍ଷାନ୍ନମାତ୍ରେଣ ଚ୍ ତୁଷ୍ଟିମନ୍ତଃ ।
ଅଶୋକବନ୍ତ କରୁଣୈକବନ୍ତଃ କୌପୀନବନ୍ତଃ ଖଲୁ ଭାଗ୍ୟବନ୍ତଃ ॥୧॥

ମୂଲଂ ତରୋଃ କେବଲମାଶ୍ରୟନ୍ତଃ ପାଣିଦ୍ୱୟେ ଭୋକ୍ତୁମମତ୍ରୟନ୍ତଃ ।
କନ୍ଥାମପି ସ୍ତ୍ରୀମିବ କୁତ୍ସୟନ୍ତଃ କୌପୀନବନ୍ତଃ ଖଲୁ ଭାଗ୍ୟବନ୍ତଃ ॥୨॥

ଦେହାଭିମାନଂ ପରିହୃତ୍ୟ ଦୂରାଦାତ୍ମାନମାତ୍ମନ୍ୟବଲୋକୟନ୍ତଃ ।
ଅହର୍ନିଶଂ ବ୍ରହ୍ମଣି ଯେ ରମନ୍ତଃ କୌପୀନବନ୍ତଃ ଖଲୁ ଭାଗ୍ୟବନ୍ତଃ ॥୩॥

ସ୍ୱାନନ୍ଦଭାବେ ପରିତୁଷ୍ଟିମନ୍ତଃ ସ୍ୱଶାନ୍ତସର୍ବେନ୍ଦ୍ରିୟବୃତ୍ତିମନ୍ତଃ ।
ନାନ୍ତଂ ନ ମଧ୍ୟଂ ନ ବହିଃ ସ୍ମରନ୍ତଃ କୌପୀନବନ୍ତଃ ଖଲୁ ଭାଗ୍ୟବନ୍ତଃ ॥୪॥

ପଂଚାକ୍ଷରଂ ପାବନମୁଚ୍ଚରନ୍ତଃ ପତିଂ ପଶୁନାଂ ହୃଦି ଭାବୟନ୍ତଃ ।
ଭିକ୍ଷାଶନା ଦିକ୍ଷୁ ପରିଭ୍ରମନ୍ତଃ କୌପୀନବନ୍ତଃ ଖଲୁ ଭାଗ୍ୟବନ୍ତଃ ॥୫॥

॥ ଇତି ଶ୍ରୀମଚ୍ଛଙ୍କରାଚାର୍ଯ୍ୟବିରଚିତଂ କୌପୀନପଞ୍ଚକଂ (ଯତିପଞ୍ଚକମ୍) ସମ୍ପୂର୍ଣ୍ଣମ୍ ॥



# ଶାନ୍ତିପାଠଃ

ଓଁ ବାଙ୍ ମେ ମନସି ପ୍ରତିଷ୍ଠିତା

ମନୋ ମେ ବାଚି ପ୍ରତିଷ୍ଠିତମାବିରାବୀର୍ମ ଏଧି ।

ବେଦସ୍ୟ ମ ଆଣୀସ୍ଥଃ ଶ୍ରୁତଂ ମେ ମା ପ୍ରହାସୀଃ

ଅନେନାଧୀତେନାହୋରାତ୍ରାନ୍ ସନ୍ଦଧାମି ।

ଋତଂ ବଦିଷ୍ୟାମି । ସତ୍ୟଂ ବଦିଷ୍ୟାମି ।

ତନ୍ମାମବତୁ । ତଦ୍‌ବକ୍ତାରମବତୁ ।

ଅବତୁ ମାମବତୁ ବକ୍ତାରମବତୁ ବକ୍ତାରମ୍ ।

ଓଁ ଶାନ୍ତିଃ ! ଶାନ୍ତିଃ !! ଶାନ୍ତି !!!

ଓଁ ବାଙ୍ = ହେ ପରମାତ୍ମନ୍! ମୋ' ବାଣୀ, ମେ = ମୋ', ମନସି = ମନରେ, ପ୍ରତିଷ୍ଠିତା = ସ୍ଥିତ ହୁଅନ୍ତୁ । ମନଃ = ମନ, ମେ = ମୋର, ବାଚି = ବାଣୀରେ, ପ୍ରତିଷ୍ଠିତମ୍ = ସ୍ଥିତ ହେଉ । ଆବିଃ = ହେ ପ୍ରକାଶସ୍ୱରୂପ ବ୍ରହ୍ମ, ମେ = ମୋତେ, ଆବୀଃ ଏଧି = ପ୍ରକଟିତ ହୁଅ । ବେଦସ୍ୟ = ବେଦରେ, ମେ = ମୋତେ, ଆଣୀସ୍ଥ = ପ୍ରବୀଣ ହେବାକୁ ସହାୟତା କର । ଶ୍ରୁତମ୍ = ଯାହା ମୁଁ ଶ୍ରବଣ କରିଛି, ମେ = ମୋତେ, ମା ପ୍ରହାସୀଃ = ପରିତ୍ୟାଗ କର ନାହିଁ । ଅନେନ = ଏହି, ଅଧୀତେନ = ପଠନ ଦ୍ୱାରା, ଅହୋରାତ୍ରାନ୍ = ଦିନରାତ୍ରି, ସନ୍ଧଧାମି = ଅନୁସନ୍ଧାନ କରିବି । ଋତମ୍ = ସତ୍ୟ, ବଦିଷ୍ୟାମି=କହିବି । ସତ୍ୟମ୍ = ସତ କଥା, ବଦିଷ୍ୟାମି = କହିବି । ତତ୍ = ସେହି ସତ କଥା, ମାମ୍ = ମୋତେ, ଅବତୁ = ରକ୍ଷା କରନ୍ତୁ । ତତ୍ = ସେହି ସତ୍ୟ, ବକ୍ତାରମ୍ = ଶିକ୍ଷାଦାନ କରୁଥିବା ଗୁରୁଙ୍କୁ, ଅବତୁ = ରକ୍ଷା କରନ୍ତୁ । ମାମ୍ = ମୋତେ, ଅବତୁ = ରକ୍ଷା କରନ୍ତୁ, ବକ୍ତାରମ୍ = ଗୁରୁଦେବଙ୍କୁ, ଅବତୁ ବକ୍ତାରମ୍ = ଗୁରୁଦେବଙ୍କୁ ରକ୍ଷା କରନ୍ତୁ । ଓଁ ଶାନ୍ତି! = ଶାନ୍ତି ହେଉ । ଶାନ୍ତି!! = ଶାନ୍ତ ହେଉ । ଶାନ୍ତି!!! = ଶାନ୍ତ ହେଉ ॥

ହେ ପରମାତ୍ମନ୍! ମୋର ବାଣୀ ମୋ' ମନରେ ସ୍ଥିତ ହେଉ । ମୋର ମନ ବାଣୀରେ ସ୍ଥିତ ହେଉ । ହେ ପ୍ରକାଶସ୍ୱରୂପ ପରମ ବ୍ରହ୍ମନ୍! ତୁମେ ମୋ'ଠାରେ ପ୍ରକଟିତ ହୁଅ । ହେ ମନ! ହେ ବାଣୀ! ବେଦଗୁଡ଼ିକର ସତ୍ୟକୁ ବୁଝିବାରେ ମୋତେ ସହାୟତା କର । ଯାହାକିଛି ମୁଁ ଶୁଣିଛି; ତାକୁ ଯେଉଳି ମୁଁ ନ ଭୁଲେ । ମୋର ଦିନ ଓ ରାତିର ସମୟ ସତ୍ୟର ଅନୁସନ୍ଧାନରେ ବ୍ୟତୀତ ହେଉ । ମୁଁ ସର୍ବଦା ସତ୍ୟ କହିବି । ସତ୍ୟକୁ ମନନ କରିବି । ସେ ହିଁ ଆମକୁ ରକ୍ଷା କରନ୍ତୁ । ସେ ଆମର ଗୁରୁଙ୍କୁ ରକ୍ଷା କରନ୍ତୁ । ମୋତେ ରକ୍ଷା କରନ୍ତୁ । ଗୁରୁଙ୍କୁ ରକ୍ଷା କରନ୍ତୁ । ଗୁରୁଙ୍କୁ ରକ୍ଷା କରନ୍ତୁ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ଆଜି ବିଶ୍ୱ ମହାସଙ୍କଟର ଦ୍ୱାର ଦେଶରେ ଉପସ୍ଥିତ । ଭୟଙ୍କର ବ୍ୟାଧି କରୋନା ମହାମାରୀ ସମସ୍ତ ବୁଦ୍ଧି, ବିଚାର, ସମୃଦ୍ଧି, ଜ୍ଞାନ, ଦୌଲତକୁ ପରାଭୂତ କରିଥିବା ପ୍ରତ୍ୟେକଙ୍କ ଅନୁଭବ୍ୟ, ସ୍ଥୁଳତଃ ମାନବୀୟ ଶକ୍ତିର ବ୍ୟର୍ଥତା ପ୍ରତିପାଦିତ । କଥାକଥାକେ ଆମେ ଯେଉଁ ସମୁନ୍ନତ ସମୃଦ୍ଧ ଦେଶ ଆମେରିକାର କଥା କହିଥାଉଁ, କୁବେରପୁରୀର ଆଖ୍ୟା ଦେଇଥାଉଁ, ସେ ଦେଶ ମଧ୍ୟ ନାଗରୀକମାନଙ୍କୁ ସୁରକ୍ଷା ଦେଇପାରିଲା ନାହିଁ । ମୃତ୍ୟୁ ଗଣନାରେ ସର୍ବାଗ୍ରେ ।

ଏହାର ମୂଳକାରଣ ହେଉଛି ବିଶ୍ୱକୁ ଧାରଣ ଏବଂ ପାଳନକାରୀ ଧର୍ମର ତିରସ୍କାର, ସଂସ୍କୃତି, ସଦାଚାର, ପରଂପରାର ଉଲ୍ଲଂଘନ, ସ୍ୱାର୍ଥପରତା, ଅନୈତିକତା, ସଂକୀର୍ଣ୍ଣତା ଅନୁଦାରତା ଆଦିକୁ ମଧ୍ୟ କାରଣ ଭାବେ ଗ୍ରହଣ କରିପାରିବା । ଏ ପରିପ୍ରେକ୍ଷୀରେ 'ଧର୍ମୋ ବିଶ୍ୱସ୍ୟ ଜଗତଃ ପ୍ରତିଷ୍ଠା' । 'ଧର୍ମୋ ଧାରୟତି ପ୍ରଜାଃ', 'ଧର୍ମୋଧାରତେ ଲୋକାନ୍', 'ଧାରଣାତ୍ ଧର୍ମ ମିତ୍ୟାହୁଃ', 'ଧର୍ମୋ ରକ୍ଷତି ରକ୍ଷିତଃ', ଆଦି ବଚନ ଆଧାରରେ ବିଶୁଦ୍ଧ ଧର୍ମ ହିଁ ବିଶ୍ୱରଧାରକ । ସଂସାର ଧର୍ମରେ ତିଷ୍ଠି ରହିଛି । କିନ୍ତୁ ଆଜିର ବିଶ୍ୱ ଧର୍ମ ତଥା ଈଶ୍ୱରଙ୍କ ନାମ ନେବାକୁ ମୂର୍ଖତା କଥା ବୋଲି ମାନିଥାଏ । ଈଶ୍ୱରଙ୍କୁ ନମାନିବା ହିଁ ବୁଦ୍ଧିମାନ ହେବାର ମାପଦଣ୍ଡ । ଫଳତଃ ସର୍ବତ୍ର ଅଶାନ୍ତି ଏବଂ ବିଦ୍ୱେଷର ଜ୍ୱାଳାରେ ଜର୍ଜରିତ । ସଂପଦ ଆକର୍ଷଣ ରାଜନୀତିଜ୍ଞଙ୍କ ପାଶ୍ଚାତ୍ୟ ଅନୁକୃତି ବିମୂର୍ତ୍ତଶୂନ୍ୟ ପରଂପରାରୁ ଆଜି ଧର୍ମ, ଅଧ୍ୟାତ୍ମ, ଯୋଗସାଧନା ଏବଂ ସଦ୍‌ବିଚାରର ମହତ୍ତ୍ୱ ନଗଣ୍ୟ ହୋଇଯାଇଅଛି । ଏହି ସ୍ଥିତି ବସ୍ତୁତଃ ନିନ୍ଦନୀୟ, ଉଦ୍‌ବେଗ ଜନକ ତଥା ଗଭୀର ଚିନ୍ତାର ବିଷୟ ।






ପ୍ରକାଶିତ ପୁସ୍ତକ :

- ଫୁଲ ଫଳ
- ସାରସ୍ୱତ ସମୀକ୍ଷଣ
- ସାରଳା ସମୀକ୍ଷଣ
- ନିବନ୍ଧ ବିନ୍ଦୁ ବିସର୍ଗ
- ଚନ୍ଦନେଶ୍ୱର ଭକ୍ତି ସୁମନ
- ଦିବ୍ୟ ସରଣୀ
- ମଧୁ ମଣ୍ଡନ
- ମଧୁଶାୟୀ
  ଶ୍ରୀ ନାରାୟଣ ଭକ୍ତି ସୁମନ
- ଭକ୍ତି ସୁମନ ଶତକ
- ଶ୍ରୀଦୁର୍ଗା ଭକ୍ତି ସୁମନ
- ସମର୍ପଣ ସୁମନ ଶତକ
- ଭଜନ ସୁମନ ଶତକ



ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା

ଯେଉଁ ଲେଖକମାନେ ଧାରାବାହିକ ଭାବେ ଲେଖିଥା'ନ୍ତି ସେମାନଙ୍କର ଗୋଟିଏ ଶୈଳୀ ସହିତ ନିର୍ଦ୍ଦିଷ୍ଟ ବିଚାରବୋଧଟିଏ ଫୁଟି ଦିଶେ । ଓଡ଼ିଆ ଭାଷା ସାହିତ୍ୟର ଅବସରପ୍ରାପ୍ତ ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡାଙ୍କ ଲେଖା ଭିତରେ ତାଙ୍କ ଜୀବନଦର୍ଶନ, ଅଧ୍ୟୟନର ପରିସର ଓ ବିଚାରର ପରିଚ୍ଛନ୍ନ ପରିପ୍ରକାଶ ପାଠକ ସ୍ୱାଭାବିକ ଭାବରେ ଅନୁଭବ କରେ । 'ଅମୃତବିନ୍ଦୁ' ପୁସ୍ତକରେ ମଣିଷର ସୂକ୍ଷ୍ମ ଚେତନାଜାତ ଉପଲବ୍ଧିର ଅମୃତ ପରଷା ଯାଇଛି । ଜୀବନ ଓ ତା'ର ତ୍ରିତାପ, ସତ୍ୟ, ଆଧ୍ୟାତ୍ମିକତା, ମଣିଷର କର୍ତ୍ତବ୍ୟ, ଲକ୍ଷ୍ୟ ଇତ୍ୟାଦି ଚତୁର୍ବର୍ଗର ଆନୁପାତିକ ବିଶ୍ଳେଷଣ ଓ ବିଧେୟ ସବୁର ଚମତ୍କାର ସମାବେଶ ଘଟିଛି । ଆଶା କରେ ଏହାର ଯେ କୌଣସି ବିନ୍ଦୁ ମୃତ୍ୟୁଞ୍ଜୟର ମନ୍ତ୍ର ହେବ ।

– ପ୍ରକାଶକ